# ଜୀବନର ଛବି



ଲେଖକ

ଶଶାଙ୍କଶେଖର ମହାନ୍ତି

# ଜୀବନର ଛବି

ଲେଖକ ଶଶାଙ୍କ ଶେଖର ମହାନ୍ତି

ପ୍ରକାଶିକା ଉଷାରାଣୀ ମହାନ୍ତି
ଭୀମଟାଙ୍ଗି ହାଉସିଂ ବୋର୍ଡ କଲୋନୀ
ଭୁବନେଶ୍ୱର, ମୋ ୮୮୯୫୪୪୦୧୧୦

ପ୍ରକାଶ କାଳ ୨୦୨୩

ମୁଦ୍ରଣ ଏସ୍. ଏସ୍ ଗ୍ରାଫିକ୍ସ
ସାମନ୍ତରାପୁର, ଭୁବନେଶ୍ୱର - ୨
ମୋ ୮୨୪୯୭୪୩୩୪୬

ମୂଲ୍ୟ ଟ. ୧୫୦/-




ମାତା ସ୍ୱର୍ଗତ ବିଦ୍ୟୁତଲତା ଓ ପିତା ସ୍ୱର୍ଗତ ରମାଚରଣ, ଯିଏକି ମୋତେ ପୃଥିବୀ ପୃଷ୍ଠକୁ ଆଣି ଆଲୋକ, ପାଣି, ପବନରେ ବଢ଼ାଇ କୁଢ଼ାଇ ମଣିଷ ଜୀବନର ସ୍ୱାଦ ବିଷାଦ ଚଖାଇବାରେ ସକ୍ଷମ ହୋଇଛନ୍ତି ତାଙ୍କ ପଦଯୁଗଳରେ ମୋର ଏହି କ୍ଷୁଦ୍ର କୃତି ତାଙ୍କର ଚରଣାବିନ୍ଦରେ ଅର୍ପଣ କରୁଛି ।

**ଲେଖକ**

# କୃତଜ୍ଞତା

ଯେଉଁମାନେ ମୋତେ ବହିଟିଏ ଛାପିବାକୁ ବାରମ୍ବାର ଉତ୍ସାହ ପ୍ରଦାନ କରୁଥିଲେ, ସେହିମାନଙ୍କ ପାଖରେ ମୁଁ ଚିରଋଣୀ ।

କେଦାରନାଥ ଗବେଷଣା ପ୍ରତିଷ୍ଠାନର ବହୁ ଗବେଷକ ନିଜନିଜର ଗବେଷଣାଜନିତ ନିବନ୍ଧ, ବିଷୟବସ୍ତୁକୁ ପାଠକରି, ତା'ର ପ୍ରକାଶନ କରିଥା'ନ୍ତି । ମୋ ଭଳି ଜଣେ ମିଲିଟାରୀ ଅଫିସରଙ୍କ ପାଖରେ କାମ କରି ସକାଳୁ ସଞ୍ଜ ପର୍ଯ୍ୟନ୍ତ 'ୟେସ୍ ସାର୍ - ନୋ ସାର୍' କହି କହି ଅବସର ନେଇଥିବା ବ୍ୟକ୍ତି କିଭଳି ଗବେଷଣା କରିବ, କାହାକୁ ନେଇ ବା କରିବ? ତଥାପି ମୋର ବନ୍ଧୁମାନେ, ଯେଉଁମାନେ ବହିଟିଏ କରିବାକୁ ଉତ୍ସାହିତ କରିଥିଲେ ସେଇମାନଙ୍କ ପାଖରେ ମୁଁ ଚିରଋଣୀ । ସେମାନେ ହେଲେ–

ଗବେଷଣା କେନ୍ଦ୍ରର ଗୁରୁ ପ୍ରତିମ ସଭାପତି ଶ୍ରୀଯୁକ୍ତ ରଘୁନାଥ ମିଶ୍ର ଓ ସେକ୍ରେଟାରୀ ରମେଶ ଚନ୍ଦ୍ର ପାଣି, ପୂର୍ବତନ ସେକ୍ରେଟାରୀ ଶ୍ରୀ ହରେକୃଷ୍ଣ ପାତ୍ର, ଶ୍ରୀଯୁକ୍ତ ଡ. ଦେବାଶିଷ ମହାପାତ୍ର, ଶ୍ରୀମତୀ ତନୟା ଦାସ ଗୋସ୍ୱାମୀ, ଶ୍ରୀଯୁକ୍ତ ଅଲେଖ ନନ୍ଦୀ, ଶ୍ରୀଯୁକ୍ତ ଲଡୁକିଶୋର ପଢ଼ିଆରୀ, ଶ୍ରୀ ଅରୁଣ ନାୟକ, ଶ୍ରୀ ଜଗତ ଚନ୍ଦ୍ର ଦାସ, ଶ୍ରୀ ଜୀବନ କୁମାର ମହାନ୍ତି, ଡ. ସୁଚେତା ରାଉତ, ଡ. ବିବେକାନନ୍ଦ ପାଣିଗ୍ରାହୀ, ଶ୍ରୀ ସୁଶାନ୍ତ ସ୍ୱାଇଁଙ୍କ ଆନ୍ତରିକତା ପାଇଁ ସେମାନଙ୍କୁ ସାଧୁବାଦ ନଜଣାଇ ରହିପାରୁନାହିଁ।

ଶେଷରେ ପ୍ରତିଷ୍ଠାନର ପୁସ୍ତକ ରକ୍ଷକ ଶ୍ରୀମତୀ ବିନୋଦିନୀ ସାହୁଙ୍କୁ ମଧ୍ୟ ମୋର ଅଶେଷ ଅଶେଷ ଧନ୍ୟବାଦ । ତାଙ୍କର ମାର୍ଗଦର୍ଶନ କେଉଁଠି ବହିଟି ଛପାହେବ ଓ ବହିଟିର ଭୁଲ୍ ଭଟକା ସଜାଡ଼ିବାରେ ତାଙ୍କର ପ୍ରେରଣା ସବୁଦିନ ପାଇଁ ମନେରହିବ ।

ଶେଷରେ ପ୍ରେସ୍‌ର ମାଲିକ ଶ୍ରୀ ଅକ୍ଷୟ କୁମାର ବାରିକଙ୍କର ଆନ୍ତରିକତା ପାଇଁ ତାଙ୍କୁ ମୋର ଆନ୍ତରିକ କୃତଜ୍ଞତା ।

**- ଲେଖକ**

# ଶଶାଙ୍କଶେଖରଙ୍କ 'ଜୀବନର ଛବି' : କେତେବେଳେ କିଆ, କେବେପୁଣି କରବୀ

ଦେବାଶିଷ ମହାପାତ୍ର

ଶଶାଙ୍କ ଶେଖର ମହାନ୍ତି, ସାଲିସ୍‌ବିହୀନ ସଚ୍ଚୋଟ, ଶୃଙ୍ଖଳିତ ମଣିଷ। ତାଙ୍କ ସହ ମୋ'ର ହାଫ୍‌ପ୍ୟାଣ୍ଟ୍ ପିନ୍ଧାବେଳର ସଂପର୍କ। ମତେ ସେ ପୁଅ ଭଳି ଆଦର କରନ୍ତି। ବିଶେଷ କରି ତାଙ୍କ ସୁଯୋଗ୍ୟା ସହଧର୍ମିଣୀ ଉଷାରାଣୀ ମହାନ୍ତି। ଅନେକ ସଭାସମିତିରେ ଉଭୟଙ୍କ ସହ ଓଡ଼ିଶା ଓ ଓଡ଼ିଶା ବାହାରେ ଏକାଠି ହୋଇଛୁ। ଉଷାମାଉସୀଙ୍କ ସଂପାଦନାରେ ନିବେଶକରେ ପ୍ରକାଶ ପାଉଥିବା 'ନିୟନ୍ତା' ପତ୍ରିକାରେ ମୋ କଞ୍ଚା ହାତଲେଖା ବାହାରିଛି। ଶଶାଙ୍କ ଶେଖରଙ୍କ 'ଜୀବନର ଛବି' ପାଣ୍ଡୁଲିପିଟି ପଢ଼ିବାପରେ ଅନୁଭବ କଲିଯେ, ଶୃଙ୍ଖଳା ତାଙ୍କ ଜୀବନର ଆଧାରଶିଳା। ଜଣେ ନିଷ୍ଠାପର ସାମରିକ ସେବା ନିବୃତ୍ତ ଅଧିକାରୀ ଶଶାଙ୍କଶେଖରଙ୍କ ଜୀବନ ବହୁ ସଂଘର୍ଷ-ସଂଘାତର ସ୍ୱାକ୍ଷର। ସେ କେବେ କୋଉଠି ସାଲିସ୍ କରିନାହାନ୍ତି। ସାମରିକ ସେବାରେ ନିୟୋଜିତ ଥିବାବେଳେ ଅନ୍ୟ ପାଇଁ ଲଢ଼ିଛନ୍ତି, ଅନ୍ୟାୟ ବିରୋଧରେ ସ୍ୱର ଉଠାଇଛନ୍ତି। ଏ ସମୟରେ ସେ ପଦପଦବୀ କି କାର୍ଯ୍ୟାନୁଷ୍ଠାନ, କ୍ରିୟା-ପ୍ରତିକ୍ରିୟା ଏସବୁ ଭାବିନାହାନ୍ତି। ଯେଉଁଟା ଠିକ୍, ଯାହା ନ୍ୟାୟର କଥା ତା'କୁ ନେଇ ସେ ଜୀବନରେ ଅଗ୍ରସର ହୋଇଛନ୍ତି। ଏଥିପାଇଁ ତାଙ୍କୁ ଅବଶ୍ୟ ଅନେକଥର ମୂଲ୍ୟଦେବାକୁ ପଡ଼ିଛି। ତେବେ ସେଥିପ୍ରତି ତାଙ୍କର ଖାତିର ନାହିଁ। ସେ ବୈଦିକ ମନ୍ତ୍ର 'ଚରୈବତିଃ ଚରୈବତିଃ'ରେ ବିଶ୍ୱାସୀ। ଆଗକୁ ଯିବାରେ ଆଗ୍ରହୀ। ଜଣେ ଶୃଙ୍ଖଳିତ ସାମରିକ କର୍ମଚାରୀ ଭାବେ ତାଙ୍କ ଦାୟିତ୍ୱ ନିର୍ବାହ କରିଛନ୍ତି।

ଶଶାଙ୍କ ଶେଖର - ଉଷାରାଣୀ ଉଭୟଙ୍କୁ ଥଟ୍ଟାରେ କେତେଥର କହିଛି ଏକ୍ ଦୁଜେ କେଲିଏ। ଯୋଡ଼ି ସତରେ ଉପରବାଲା ବନେଇଛି। ଏ ଦୁହେଁ 'ଉତ୍କଳ ସମ୍ମିଳନୀ'ର ସକ୍ରିୟ କର୍ମୀ ଭାବେ କେତେ କାମ କରିଛନ୍ତି। ବିଛିନ୍ନାଞ୍ଚଳରେ ବି ଓଡ଼ିଆ ଭାଷା ପ୍ରତିଷ୍ଠାନ ସହଯୋଗରେ ଆୟୋଜିତ ଭାଷା ପ୍ରଶିକ୍ଷଣ କାର୍ଯ୍ୟରେ ଉଭୟଙ୍କ ସହଯୋଗ ଦେଖିଛି। ଭାଷା ଓ ଭୂଗୋଳ ପାଇଁ ସମର୍ପିତ ଦମ୍ପତିଙ୍କ ସକ୍ରିୟତା ସତରେ ଅଭିନନ୍ଦନୀୟ। କେଦାରନାଥ

ଗବେଷଣା ପ୍ରତିଷ୍ଠାନରେ ଶଶାଙ୍କ ଶେଖର ଅନେକ ଗୁରୁ ଦାୟିତ୍ୱ ସୁଚାରୁ ରୂପେ ସଂପନ୍ନ କରିଛନ୍ତି। ପ୍ରତିଷ୍ଠାନର ବାର୍ଷିକ ଭ୍ରମଣରେ ସେ ତ ଆମକୁ ଆଗକୁ ବାଟ କଢ଼ାନ୍ତି। ଜୀବନରେ କେତେ କଥା, କେତେ ବ୍ୟଥା, ରୋକ୍‌ଠୋକ୍ କହିଦିଅନ୍ତି। ସେସବୁ କଥାକୁ ଛାଣି ଲେଖିଛନ୍ତି 'ଜୀବନର ଛବି', ଛୋଟ ବହିଟିଏ। ସଂଘର୍ଷର କାହାଣୀ, ଅନୁଭୂତିର କଥା। ଖୁବ୍ ମାର୍ମିକ ହୋଇଛି। ବହିଟିର କଳେବର ଆଗାମୀ ଦିନରେ ବଢ଼ାଇବେ ବୋଲି ଆଶା କରି ଏଥର ଅଳ୍ପରେ ବି ଅନେକ କଥା କହିଥିବା ଶଶାଙ୍କ ଶେଖରଙ୍କୁ ଅଭିନନ୍ଦନ ଜଣାଉଛି। ତାଙ୍କ ବ୍ୟକ୍ତିତ୍ୱ ଓ କୃତିତ୍ୱ ପଛରେ ଉଷା ମାଉସୀଙ୍କ ଅବଦାନ କିଛି କମ୍ ନୁହେଁ। ଉଭୟଙ୍କୁ ଏହି ଅବସରରେ ପ୍ରଣାମ ଜଣାଇ ଓଡ଼ିଆ ଭାଷା କ୍ଷେତ୍ରରେ ଉଭୟ ଏମିତି ଚଳଚଞ୍ଚଳ ରହି ଭବିଷ୍ୟତରେ ଅଧିକ ଅବଦାନ ଦିଅନ୍ତୁ ବୋଲି ଆଶା କରୁଛି। 'ଜୀବନର ଛବି' ପାଠକ ମହଲରେ ଆଦୃତ ହେବ, ଏହା ମୋ ଦୃଢ଼ ବିଶ୍ୱାସ।

ପ୍ରାକ୍ତନ ଅଧ୍ୟାପକ, ଭାଷା ବିଜ୍ଞାନ
ଓମର ମୁଖ୍‌ଦାର ବିଶ୍ୱବିଦ୍ୟାଳୟ,
ଲିବ୍ୟା, ଉତ୍ତର ଆଫ୍ରିକା





ସମର ଶିକ୍ଷାର୍ଥୀ କେଡେଟ୍‌ମାନଙ୍କୁ ଟ୍ରେନିଂ ଦେବା ଅବସରରେ।

# ଜୀବନର ଛବି

୧୯୬୫ରେ ଜାନୁୟାରୀରେ ଚାକିରିରେ ବାହିଲ୍ ହେଲା ପରେ ବହୁତ ଘଟଣା ଓ ଦୁର୍ଘଟଣାର ସମ୍ମୁଖୀନ ହେବାକୁ ପଡ଼ିଛି ତେବେ ବ୍ରହ୍ମପୁରର ୧୧ ଓଡ଼ିଶା ବାଟାଲିଅନରେ ଯୋଗ ଦେବାର ପ୍ରାୟ ବର୍ଷେ କିମ୍ବା ଆଉକିଛି ମାସ ପରେ ମତେ ୧ମ ଓଡ଼ିଶା ଇଣ୍ଡିପେଣ୍ଡେଣ୍ଟ କମ୍ପାନୀ ଏନ୍.ସି.ସି.କୁ attachment (ସଂଲଗ୍ନ)ରେ ପଠାଇ ଦିଆଗଲା । ଏହି କମ୍ପାନୀ ଦୀର୍ଘଦିନ ହେଲା ପାରଳାଖେମଣ୍ଡିର ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି କଲେଜ (SKCG) ର ଛାତ୍ରଙ୍କୁ ନେଇ ଗଠିତ ହୋଇଥିଲା ଓ ତା ଅଧିନରେ ବହୁ ସ୍କୁଲ ମଧ୍ୟ ଥିଲା । ବୋଧେ ମୁଁ ହିଁ ସେହି କଲେଜର ଶେଷଛାତ୍ର ଭାବେ ଆଲ ଇଣ୍ଡିଆ ସମର ଟ୍ରେନିଂ କ୍ୟାମ୍ପ, ଧର୍ମଶାଳା, କାଂଗ୍ରା ପୂର୍ବ ପଞ୍ଜାବରେ ଯୋଗ ଦେଇଥିଲି । ତାପରେ ସେ ୟୁନିଟ୍ ବା ଅଫିସ୍‌କୁ ଭାଙ୍ଗି ଦିଆଯାଇ ବ୍ରହ୍ମପୁରରେ ଥିବା ୧୧ ଓଡ଼ିଶା ବାଟାଲିଅନରେ ମିଶାଇ ଦିଆ ଯାଇଥିଲା । ଯେଣୁ ଏହା ବହୁ ପୁରାତନ ଅଫିସ୍, ଏଠାର ସମସ୍ତ ଫାଇଲ ଓ କାଗଜ ପତ୍ର ମତେ ଦେଖାଶୁଣା କରିବାକୁ ପଡ଼ିଥିଲା । ଅବଶ୍ୟ ମୋ ସହିତ ଜଣେ ସୁବେଦାର, ୩ ଜଣ ହାବିଲଦାର ବା ସର୍ଜେଣ୍ଟ ଓ ୨ ଜଣ କର୍ପୋରାଲ ଓ ଜଣେ ସ୍ୱିପର (କୋର୍ଟ କେସ୍ ଥିବାରୁ ଆଟାଚମେଣ୍ଟରେ ଆସି ଯୋଗ ଦେଇଥିଲେ) ତାଙ୍କ ପାଇଁ ପ୍ରତି ମାସରେ ଉପସ୍ଥାପନ ଓ ବିବୃତି ତାଙ୍କ ପେରେଣ୍ଟ ଡିପାର୍ଟମେଣ୍ଟକୁ ପଠାଇବାକୁ ପଡ଼ିଥାଏ, ଯାହା ଫଳରେ କି ଠିକ୍ ସମୟରେ ତାଙ୍କ ଦରମା ଓ ଅନ୍ୟାନ୍ୟ ମାସିକ ପ୍ରାପ୍ୟ, ଆମ ଅଫିସ୍‌କୁ ଆସିଥାଏ ।

ଠିକ୍ ସେହିଭଳି ଅନ୍ୟମାନଙ୍କ ଉପସ୍ଥିତି, ଛୁଟି ଓ ଅନ୍ୟାନ୍ୟ ଆବଶ୍ୟକ ରିପୋର୍ଟମାନ ସେମାନଙ୍କ ମୂଳ ଅଫିସ୍‌କୁ ପଠାଇବା ସଙ୍ଗେ କଲେଜର ସମସ୍ତ କାର୍ଯ୍ୟ କଳାପର ବିବରଣୀମାନ ପଠାଇବାକୁ ପଡ଼ିଥାଏ, ୧୧ ଓଡ଼ିଶା ବଟାଲିଅନ ବ୍ରହ୍ମପୁରକୁ ।

ଯେହେତୁ ସେଠାରେ ମତେ ଏକାକୀ କାର୍ଯ୍ୟ କରିବାକୁ ପଡୁଥିଲା ତେଣୁ ସବୁ ବିଷୟରେ ବା ସବୁ ବିଭାଗର କାର୍ଯ୍ୟ ସୂଚାରୁ ରୂପେ କରିବାର ସୁଯୋଗ ମିଳିବା ସହିତ ରାଜ୍ୟ ତଥା ପ୍ରତିରକ୍ଷା ବିଭାଗର କାର୍ଯ୍ୟ ଗୁଡ଼ିକ ସୁଚାରୁ ରୂପେ ପରିଚାଳନା କରି ତା ଉପରେ ବେଶ ଦକ୍ଷତା ହାସଲ କରିବା ସମ୍ଭବ ହୋଇ ପାରିଥିଲା ।

୧୯୬୫ରୁ ୧୯୬୭ର ମଧ୍ୟ ଭାଗରୁ ମତେ ପାରଳାଖେମଣ୍ଡିର ୧ମ ଓଡ଼ିଶା (ସ୍ୱାଧୀନ)କମ୍ପାନୀ, ସମର ଶିକ୍ଷାର୍ଥୀ ବାହିନୀରେ ଯୋଗ ଦେବାକୁ ପଡ଼ିଥିଲା । ଯେହେତୁ ସେହି କମ୍ପାନୀ ଓଡ଼ିଶାର ଏକ ପୁରୁଣା ଅଫିସ୍ ତେଣୁ, ସେଠାରେ ବହୁମାତ୍ରାରେ କଲେଜ ଓ ସ୍କୁଲ୍ ଛାତ୍ରଙ୍କ ପୋଷାକ, ଟ୍ରେନିଂ ପାଇଁ ସମସ୍ତ ଉପକରଣ, ବନ୍ଧୁକ, ଗୁଳି, ଗ୍ରିନେଡ, ଏପରିକି ଏଲ୍.ଏମ୍.ଜି. .୨୨ ବନ୍ଧୁକ ଓ ୭୦୭ ବନ୍ଧୁକ ପ୍ରାୟ ୨୮୦ଖଣ୍ଡେ ଥିଲା ଯାହାର ରକ୍ଷଣାବେକ୍ଷଣ ଓ ପିଲାମାନଙ୍କ ଟ୍ରେନିଂ ପାଇଁ ବ୍ୟବହୃତ ହେଉଥିଲା ।

ପାରଳାଖେମଣ୍ଡି କଲେଜର ପ୍ରଫେସର ଗୋପାଳ କୃଷ୍ଣ ପାଢ଼ୀ, ସମର ଶିକ୍ଷାର୍ଥୀ ବାହିନୀର କ୍ୟାପଟେନ୍ ଭାବେ ଅବସ୍ଥାପିତ ଥା'ନ୍ତି, ଓ ମୁଁ ୧୧ ଓଡ଼ିଶା ବାଟାଲିଅନରୁ ୧ମ ଓଡ଼ିଶା ଇଣ୍ଡିପେଣ୍ଡେଣ୍ଟ କମ୍ପାନୀକୁ ଅସ୍ଥାୟୀ ଭାବେ ବଦଳି ହୋଇଥାଏ । ମେଜର ବଟକୃଷ୍ଣ ମହାନ୍ତି; ଯିଏକି ୧୧ ଓଡ଼ିଶା ବାଟାଲିଅନର ଅଫିସର କମାଣ୍ଡିଭାବେ କାର୍ଯ୍ୟ କରୁଥିଲେ; ତାଙ୍କରି ବେଳରେ ମୁଁ ସେଠାରେ ଇଣ୍ଟରଭ୍ୟୁ ଦେଇ ଏଲ୍.ଡି.ସି. ଭାବେ ଯୋଗ ଦେଇଥିଲି । ଏବଂ ଯେହେତୁ ମୁଁ ଏସ୍.କେ.ସି.ଜି କଲେଜର ଛାତ୍ର ଥିଲି; ତେଣୁ ସେ ମତେ ସେହି କଲେଜର ସମସ୍ତ କାଗଜ ପତ୍ର ଓ ଆର୍ମସ, ଏମୁନେସନ; ଟ୍ରେନିଂ ପାଇଁ ଆବଶ୍ୟକ ସରଞ୍ଜାମ ଓ ପୋଷାକ ପତ୍ରର ହିସାବ ରଖିବା ଦାୟିତ୍ୱ ମଧମୋର ଥିଲା । ସମସ୍ତ ପୁରୁଣା ଓ ନୂଆ କାଗଜପତ୍ର ଓ ଫାଇଲ୍ ଏକାଠି କରି ରଖିବା ଓ ତାର ହିସାବ ରଖିବା ମଧ ମୋ ଦାୟିତ୍ୱ ଥିଲା ।

ଏହି ସମୟରେ ବୋଧେ ୧୯୬୬-୬୭ରେ ରଙ୍ଗେଇ ଲୁଣ୍ଡାରେ ଗୋଟିଏ ପ୍ରଶିକ୍ଷଣ ଶିବିରର ଆୟୋଜନ ହୋଇଥିଲା ଓ ସେଥିରେ କ୍ୟାମ୍ପ

କମାଣ୍ଡିଂ ଅଫିସର ଭାବେ ମେଜର ବଟକୃଷ୍ଣ ମହାନ୍ତି ଓ କ୍ୟାପଟେନ ବିମଳେନ୍ଦୁ ମହାନ୍ତି ଟ୍ରେନିଂ ଅଫିସର ଭାବେ କ୍ୟାମ୍ପ ପରିଚାଳନା କରୁଥିଲେ । ବରିଷ୍ଠ (ସିନିୟର) ଓ କନିଷ୍ଠ (ଜୁନିଅର) କଲେଜ ଓ ସ୍କୁଲ ପିଲାଙ୍କ ପାଇଁ ସେ ପ୍ରଶିକ୍ଷଣ ଶିବିର ଉଦ୍ଦିଷ୍ଟ ଥିଲା । ପ୍ରାୟ ୮୦୦ ପିଲାଙ୍କ ମଧ୍ୟରୁ ଯାହା ମୋର ମନେ ଅଛି-୨୦୦ ବରିଷ୍ଠ କଲେଜ ଓ ୬୦୦ କନିଷ୍ଠ ବା ସ୍କୁଲ୍ ପିଲା ଯୋଗ ଦେଇଥାନ୍ତି ।

ସେହି ଶିବିର ପାଇଁ ମୋ ସହିତ ୫ଜଣ କିରାଣୀ ଯୋଗ ଦେଇଥିଲେ । ସେଥିରୁ ଆପାରାଓ ବେହେରା ଏକାଉଣ୍ଟାଣ୍ଟ (ହିସାବ କିରାଣୀ) ଓ ମୁଁ ତାଙ୍କ ସାହାଯ୍ୟକାରୀ ବା ଆସିଷ୍ଟାଣ୍ଟ ଭାବେ କାର୍ଯ୍ୟ କରୁଥିଲି ଓ ଆଉ ତିନିଜଣ ଭିତରୁ ଜଣେ ଟ୍ରେନିଂ, ଜଣେ ଲଜେଷ୍ଟିକ୍ ବା ପ୍ରଶିକ୍ଷଣ ଶିବିରର ସମସ୍ତ ଖାଦ୍ୟପେୟ ପୋଷାକ ପ୍ରଶିକ୍ଷଣ ନିମନ୍ତେ ସମସ୍ତ ପ୍ରଶାଧନର ହିସାବ ରକ୍ଷକ ଓ ଅନ୍ୟଜଣେ ପ୍ରଶାସନ ସମ୍ପର୍କୀୟ କାର୍ଯ୍ୟ କରିବାକୁ ନିୟୋଜିତ ଥିଲେ । ସେତେବେଳେ ବୋଧେ ପ୍ରତି ଛାତ୍ର ପାଇଁ ଟ.୩.୦୦ ଟଙ୍କା ଖାଦ୍ୟ ପାଇଁ ସରକାର ଦେଉଥିଲେ । ଯେଉଁଥିରେ କି ପିଲାମାନଙ୍କୁ ସୁନ୍ଦର ଭୁରି ଭୋଜନରେ ଆପ୍ୟାୟୀତ କରିବା ସହିତ ତାଙ୍କର ପ୍ରସ୍ଥାନ ଦିନ ୨ ଓଳିର ଖାଦ୍ୟ, ଅଣ୍ଡା, ପାଉଁରୁଟି ଫଳ ଇତ୍ୟାଦି ଦିଆଯାଇ ପାରୁଥିଲା ।

ମୋର ମନେ ଅଛି, ସେଠାରେ ଜଳର ଭୀଷଣ ଅଭାବ ହେତୁ, ମୁହଁ-ହାତ ଧୋଇବା, ବାସନ ମାଜିବା ପାଇଁ, ଖାଇ ସାରିଲା ପରେ କେବଳ ଗୋଟିଏ ମଗ୍ (ଧଳା ମଗ୍-ପ୍ରଥମେ ପ୍ରଥମେ ମିଲିଟାରୀରେ ବ୍ୟବହାର ହେଉଥିଲା) ପାଣି ମାତ୍ର ମିଳୁଥିଲା । ଖାଇସାରିବା ପରେ ପିଲାମାନଙ୍କୁ ବାଲିରେ ଥାଳି-ତାଟିଆ ସଫା କରିବାକୁ କୁହାଯାଉଥିଲା ଓ ଅଳ୍ପ ପାଣିରେ ପୋଛି ସଫା କରିବାକୁ କୁହାଯାଉଥିଲା ।

ଏହାମଧ୍ୟ ଏକ ମିଲିଟାରୀ ଶିକ୍ଷାନବିଶଙ୍କ ପାଇଁ ଶିକ୍ଷଣୀୟ ଥିଲା । ଏହି ପ୍ରଶିକ୍ଷଣ ଶିବିର ଶେଷଦିନର କଥା ।

ସକାଳୁ ସକାଳୁ ପିଲାମାନଙ୍କୁ ଦିନକର ଶୁଖିଲା ଖାଦ୍ୟ ପାଉଁରୁଟି, ଅଣ୍ଡା, କିଛି ପୁରୀ ଓ ଶୁଖିଲା ତରକାରୀ, ଓ କିଛି ଫଳ ଦେଇ ବିଦା କରି ଦିଆଗଲା, ସମସ୍ତେ ବହୁ ଖୁସି ସହିତ ଦୁଃଖରେ ଶିବିର ସ୍ଥଳୀ ଛାଡ଼ିଲେ ନିଜ ନିଜ ସ୍କୁଲ ଓ କଲେଜ ଅଭିମୁଖେ ।

ଆମେ ସବୁ କର୍ମଚାରୀ ନିଜ ନିଜ କାର୍ଯ୍ୟ ସମାପନ କରିବାକୁ ଅଫିସ୍ ଟେଣ୍ଟରେ ଆସି ବସିଥାଉ । ଏହି ସମୟରେ ୨ଜଣ ଜାକ ଅଫିସର ଆସି ପହଞ୍ଚି ତାଗିଦ୍ କରିଗଲେ, ଆଜି ରାତି ସୁଦ୍ଧା ସମସ୍ତ କାର୍ଯ୍ୟ ଶେଷକର । କାଲି ସକାଳୁ ଆମେ ଶିବିର ସ୍ଥଳ ଛାଡ଼ିବା ଆଜି ରାତିର ଡିନର ପାଇଁ ଲଙ୍ଗରରେ ରୋଷେଇ ହେବ । ରୋଷେୟାମାନେ ଖାଇବେ ଓ ତୁମେମାନେ ମଧ୍ୟ ଖାଇଦେବ । ସକାଳୁ ଟ୍ରକ ଲୋଡ଼ କରିଦେବ, ଅଫିସର ସମସ୍ତ ଅସବାବ ପତ୍ର ଯେପରି ଠିକ୍ ଠାକ ଭାବେ ରହିବ ପଛରେ ଯେପରି କିଛି ଛାଡ଼ି ନ ଯାଅ ।

ସମସ୍ତେ ହଁ ଭରିଲେ । ଖରାବେଳ ଖିଆ ଯେପରି ସେପରି ଚଳିଗଲା କାରଣ ରୋଷେୟାମାନେ ପ୍ରତିଦିନ ଆମ ପାଖକୁ ବାଲ୍ଟି ଡେକ୍‌ଚିରେ ଖାଦ୍ୟ ପଠାଇ ଦେଇଥାନ୍ତି ଓ ଆମେ ଆମ ଟେଣ୍ଟରେ ବସି ଖାଇଥାଉ । ସକାଳୁ ୬ଟାରେ ଚା; ୮.୯ଟା ସମୟରେ ଜଳଖିଆ, ଦିନ ବାରଟାରୁ ଗୋଟାଏ- ମଧ୍ୟାନ୍ନ ଭୋଜନ ସନ୍ଧ୍ୟା ୪-୫ଟାରେ ବିସ୍କୁଟ ଓ ଚା ଓ ସନ୍ଧ୍ୟା ୮ଟା ସୁଦ୍ଧା ରାତ୍ରି ଭୋଜନ ଏହା ସବୁଦିନର ସରଣୀ । ଆମ ପାଇଁ ପିଅନ ଜଣେ ପ୍ରସ୍ତୁତ ରହିଥାଏ । ବେଲ୍ ବାଜିଲେ ଆଗ ଲାଇନ୍ ଲଗାଇ ନେଇଆସେ ବାବୁମାନଙ୍କ ପାଇଁ ।

ପିଲାମାନେ ଯିବା ପରେ ସମସ୍ତ କାର୍ଯ୍ୟ ଶେଷ କରିବା ପାଇଁ ଆମେ ଲାଗି ପଡ଼ିଥିଲୁ । ମୋର କାମ ଥିଲା କେଉଁ ବିଲ ଭାଉଚର ଠିକ୍ ଖାତାରେ ଚଢ଼ିଚି କି ନାହିଁ । ଭାଉଚରରେ ଷ୍ଟାମ୍ପ (ରେଭିନ୍ୟୁ) ଲାଗିଛି କି ନାହିଁ । ସେଗୁଡ଼ିକ ପାଶ୍ ଫର ପେମେଣ୍ଟ ପେ ଅର୍ଡ଼ର ଓ ପେଡ୍ ରବର ଷ୍ଟାମ୍ପ ଲାଗି ଦସ୍ତଖତ ହୋଇଛି କି ନାହିଁ ତାକୁ ଠିକ୍ କରିବା । ହିସାବ ରକ୍ଷକ ତାକୁ

ଠିକ୍ ଲିପିବଦ୍ଧ କରିଛନ୍ତି କି ନାହିଁ । ଏ ସମସ୍ତ କାର୍ଯ୍ୟ ସାରୁ ସାରୁ ପ୍ରାୟ ୯ଟା ଉପରେ ହୋଇଯାଇ ଥିଲା । ଅଫିସ୍ ଟେଣ୍ଟ ବନ୍ଦ କରି ଆମର ରହିବା ଟେଣ୍ଟକୁ ଆସି ଦେଖିଲା ବେଳକୁ ପିଅନଟି ଶୋଇଯାଇଛି । ଦିନ ଯାକର କଷ୍ଟ ନିଶ୍ଚୟ ବାଧୁଥିବ ତାକୁ ଉଠାଇଲୁ, କିନ୍ତୁ ଦୁଃଖର ସହିତ ସେ କହିଲା, ରାତିପାଇଁ ଯାହାଥିଲା ତାକୁ ରୋଷେୟାମାନେ ଖାଇ ଶୋଇ ସାରିଲେଣି ଆମ ପାଇଁ ତାଙ୍କୁ କେହି କହିନାହିଁ । ତେଣୁ ସେମାନେ ରୋଷେଇ କରି ନାହାନ୍ତି ।

ତା ପରେ ଯାହା ହବା କଥା । ସମସ୍ତଙ୍କ ପେଟରେ ଭୋକ, ଯାହା ପାଟିକୁ ଯାହା ଆସିଲା ବକି ଦେଇଗଲେ । କାରଣ ସେଠାରେ ଅଫିସର କି କୌଣସି ମିଲିଟାରୀର ତଳିଆ କର୍ମଚାରୀ ମଧନଥିଲେ । ଆମ ଟେଣ୍ଟରେ ପିଅନକୁ ମିଶାଇ ଆମେ କେବଳ ୬ଜଣ (ଛ) ସେଥିରେ ମୁଁ ବାଧ୍ୟ ହୋଇ ସମସ୍ତଙ୍କୁ ଗାଈ ଗୋଠ ଅଡ଼େଇଲା ଭଳି, ଗୋପାଳପୁର ଯିବାକୁ କହିଲି, ଓ ଭୋକ ବିକଳରେ ସମସ୍ତେ ମଧ୍ୟ ରାଜି ହୋଇଗଲେ, ଜହ୍ନ ରାତି ତେଣୁ ଗୋଟିଏ ଗୋଟିଏ ଚାଲିଲୁ ଗୋପାଳପୁର, ଗୋପାଳପୁରରେ ପହଁଞ୍ଚିଲା ବେଳକୁ ରାତି ୧୧ ବାଜି ସାରିଥିଲା । ସବୁଆଡ଼ ଶୂନଶାନ କେବଳ ସମୁଦ୍ର ଗର୍ଜନ ।

ତେବେ ସାହସ ବାନ୍ଧି ଗୋଟିଏ ଦୋକାନୀକୁ ଉଠାଇଲୁ ତାର ଯାହାଥିଲା, ବିସ୍କୁଟ, ପାଉଁରୁଟି ଏପରିକି ମିକ୍ସଚର ମଧ୍ୟ ଶେଷ କରିଦେଲୁ ଓ ପେଟେ ପେଟେ ପାଣି ପିଇ ପୁଣି ଚାଲି ଚାଲି ପେରିଲୁ ଶିବିର ଆଡ଼କୁ ।

ତା ଆରଦିନ ସକାଳ ସମସ୍ତେ ଶୋଇଥିଲେ, ମତେ କିନ୍ତୁ ରାତିଯାକ ନିଦ ନ ଥାଏ, ଅଫିସର ତ କହିଗଲେ ରୋଷେୟାଙ୍କୁ ରୋଷେଇ କରିବାକୁ କୁହାହୋଇଛି । ତେବେ କ'ଣ ହେଲା ଯେ ରୋଷେୟା ରୋଷେଇ କଲେ ନାହିଁ । ତାଙ୍କର ପାଉଣା ତ ଠିକ୍ ହିସାବ କରି ଦେଇ ଦେଲୁ । ତେଣୁ ବୋଧେ ସେମାନେ ଅନ୍ୟ କୁଆଡ଼େ ଯାଇ ଖାଇଦେଇ ଆସିଲେ ଓ ରୋଷେଇ କରି ନାହାନ୍ତି । ନଚେତ ମଦ ପିଇ ଶୋଇ ପଡ଼ିଥିବେ । କାରଣ ୧୨ ଦିନର

କଷ୍ଟ ଲାଘବ ପାଇଁ, ସମସ୍ତଙ୍କୁ ଗୋଟାଏ ଲେଖାଏଁ ବିଦେଶୀ ମଦ ଧରାଇ ଦେଇଥିଲେ କ୍ୱାଟର ମାଷ୍ଟର 'ଡିଫେନ୍ସର ସୁବେଦାର ଯିଏକି ଲଜେଷ୍ଟିକର ଦାୟିତ୍ୱରେ ଥା'ନ୍ତି ।

ତା ପରଦିନ ସକାଳୁ ସକାଳୁ, ଶକ୍ତିମାନ ଟ୍ରକର ଡ୍ରାଇଭର ଓ ୨ ଜଣ ଲସ୍କର ଆସି ଡାକ ଛାଡ଼ିଲେ । ଆମେ ସବୁ ଉଠି ସମସ୍ତ ଜିନିଷ ତାଙ୍କୁ ଗୋଟି ଗୋଟି କରି ରଖିବାକୁ ଦେଲୁ । ୨.୩ଟି ଟେଣ୍ଟ ରୋଷେୟା ମାନଙ୍କର ଓ ଅନ୍ୟାନ୍ୟ ଷ୍ଟୋର ଜିନିଷ ମଧ୍ୟ ଲଦା ହୋଇଗଲା ।

ଠିକ୍ ୮ଟା କି ୯ଟା ହେବ, ଦୁଇଜଣ ଯାକ ଅଫିସର ଆସି ପହଞ୍ଚିଗଲେ । ସେତେବେଳକୁ ସେମାନେ ମଧ୍ୟ ଗତ କାଲିର ଘଟଣା ଶୁଣି ସାରିଥିଲେ ପିଅନ ପାଖରୁ ଆମ ଟେଣ୍ଟକୁ ଆସିବା ପୂର୍ବରୁ ମୁଁ ଆଉ ବାକି ରହିଲିନି ଯାହା ପାଟିକୁ ଆସିଲା ବକି ଦେଇ ଗଲି । ମୁଁ ଟେଣ୍ଟ ଭିତରେ ସେମାନେ ବାହାରେ; ଟେଣ୍ଟ ଭିତରେ ଥାଇ ପିଅନଟି ଯାହା ଡରି ମରି ମତେ ସଙ୍କେତ ଦେଉଥାଏ, ସେମାନେ ଆସିଲେ, ଏବଂ ମୋ ପାଟି ଶୁଣି ସେମାନେ ଫେରିଗଲେ ରୋଷେୟାମାନଙ୍କ ପାଖକୁ ।

କିଛି ସମୟ ପରେ ପୁଣି ଫେରିଲେ, ସାଙ୍ଗରେ ରୋଷେୟାମାନେ । ଟ୍ରକ ପାଖରେ ଠିଆ ହୋଇଥିଲେ ସମସ୍ତେ । ସମସ୍ତଙ୍କୁ ଟ୍ରକରେ ଚଢ଼ି ଯିବାକୁ କହିଲେ ଅଫିସର ଦ୍ୱୟ । ଜଣେ ପରେ ଜଣେ ସମସ୍ତେ ଚଢ଼ି ଗଲେ ଟ୍ରକ ଉପରକୁ, ମୁଁ କେବଳ ଟ୍ରକ ତଳେ ଠିଆ ହୋଇ ରହିଥାଏ । ଟ୍ରକଟି ଉଭର ଲୋଡ଼ ସାଙ୍ଗକୁ ଟେବୁଲ୍ ଚୌକି ଗୁଡ଼ିକ କେତେବେଳେ ଖସିପଡ଼ିବ ସେ ଭୟ ମଧ୍ୟ ଥାଏ, ମୁଁ କେବଳ ଡ୍ରାଇଭରକୁ ସୂଚେଇ ଦେଉଥାଏ କି, ଏଗୁଡ଼ିକ ଖସିବ ନାହିଁ ତ ? ୧୦-୧୨କିଲୋମିଟର ବାଟ, ଆସ୍ତେ ଆସ୍ତେ ଚାଲିଯିବ କହି ନିର୍ଭୟ ସୂଚକ ବକ୍ତବ୍ୟ ରଖିଲା ଡ୍ରାଇଭର ।

ମୁଁ ସେମିତି ଠିଆ ହୋଇଥାଏ ଶକ୍ତିମାନ ଟ୍ରକ ପାଖରେ, ମତେ ନିର୍ଦ୍ଦେଶ ଆସିଲା, ତୁମେ ତଳେ କାହିଁକି ରହିଲ ସମସ୍ତେ ଟ୍ରକ ଉପରେ,

ତୁମେ ତଳେ, କ'ଣ ତୁମେ ଯିବ ନାହିଁକି ? ମୁଁ ସାଙ୍ଗେ ସାଙ୍ଗେ କହିଲି, ମୁଁ ଟିଏ ଡିଏ ନେଇଛି, ବସରେ ଯିବି ।

ଠିକ୍ ଅଛି କହି, ଡ୍ରାଇଭରକୁ ଗାଡ଼ି ଛାଡ଼ିବାକୁ କହି ଅଫିସ୍‌ର ଦ୍ୱୟ, ଆମ୍ବାସାଡରେ ବସି ଚାଲିଲେ, ମୁଁ ମଧ୍ୟ ମୋର ନାଲି ଜୋତା, ଖାକି ପ୍ୟାଣ୍ଟ ଓ ଧଳା ଇନ୍‌କରା ଶାର୍ଟକୁ ଟିକିଏ ବାଗେଇ ଦେଇ, ଆଗେଇ ଚାଲିଲି ଲେଫ୍ଟ-ରାଇଟ୍ କରି । ମୁଁ ଆଶା କରିଥିଲି ଏମାନଙ୍କର (ଅଫିସର ୨ଜଣ) ମୋର ଗାଳି ଶୁଣି ପେଟ ପୁରି ଯାଇଥିବ । ତେଣୁ ଅଧିକା କିଛି ନକହି ମୁଁ ଚାଲିଲି । ପ୍ରାୟ ଦେଢ଼-ଦୁଇ କିଲୋମିଟର ଦୂରରେ ଗୋପାଳପୁର ବ୍ରହ୍ମପୁରର ମୁଖ୍ୟ ରାସ୍ତା ।

ପ୍ରାୟ ୧-ମିନିଟ୍ ଚାଲିବା ପରେ ସାମ୍ନାରେ ଦେଖିଲି ଆମ୍ବାସାଡର କାରଟି ଫେରୁଛି । ତେଣୁ ମୁଁ ଆଗକୁ ପଛକୁ ନ ଦେଖି ମୋର ଚାଲିବା ଗତିକୁ ଟିକିଏ ବଢ଼ାଇ ଦେଲି; ସେମାନେ ମତେ ପାଶ କରି ମୋ ପଛକୁ ଚାଲିଗଲେ ମୁଁ କିନ୍ତୁ ସେଥିପାଇଁ କୌଣସି ପ୍ରକାର ଚିନ୍ତା ନକରି ଚାଲିଥାଏ । ୨-୩ମିନିଟ୍ ପରେ ମୋ ପଛରେ ହର୍ଣ୍ଣଦେଇ ଠିଆ ହୋଇଗଲା ଆମ୍ବାସାଡର । ପଛକୁ ଅନାଇ ଦେଖେ ତ ମେଜର ମହାନ୍ତି ତଳକୁ ଓହ୍ଲାଇ ଡାକୁଛନ୍ତି ।

ପାଖକୁ ଗଲି-'ଗାଡ଼ିରେ ବସ' କହିଲେ ମେଜର ମହାନ୍ତି; ବିମଳେନ୍ଦୁ ମହାନ୍ତି ସେତେବେଳେ ବୋଧେ କେପଟେନ୍ ରେଙ୍କରେ ଥିଲେ । ମୁଁ କିଛି ନ କହି ଚୁପ ଚାପ ଯାଇ ଆଗ ସିଟ୍‌ରେ ବସିଗଲି ଗାଡ଼ି ଛାଡ଼ିଲା ।

ପଛ ସିଟ୍‌ରେ ବସି ୨ଜଣ ଯାକ ଅଫିସର କଣ କଥା ବାର୍ତ୍ତା ହେଉଛନ୍ତି-ତା ଶୁଣିବା ମଧ୍ୟ ମୋ ପକ୍ଷେ ସମ୍ଭବ ନଥିଲା କାରଣ ମତେ ଗତ କାଲିର ରାତ୍ରିର ଖାଦ୍ୟ ଓ ଆମକୁ ମିଥ୍ୟା ପ୍ରତିଶ୍ରୁତି ଓ ଗୋପାଳପୁର ଯିବା କଷ୍ଟ ସବୁ ମୋର ମନକୁ ଗରମ କରି ରଖିଥିଲା ତେଣୁ ମୁଁ କିଛି ଶୁଣିବା ଅବସ୍ଥାରେ ନଥିଲି । ଗାଡ଼ି ଚାଲିଛି ।

ଦେଖିବାକୁ ମିଳିଲା ଆଗରେ ଯାଉଥିବା ଅଫିସ୍ ଟ୍ରକଟି ଠିଆ ହୋଇଛି । ଆଉ ଆମର ଏକାଉଣ୍ଟାଣ୍ଟ ବାବୁଙ୍କ ମୁଣ୍ଡରୁ ଧାର ଧାର ରକ୍ତ ବୋହୁଛି, ଆଉ ସେ ଟ୍ରକର ତଳକୁ ଓହ୍ଲାଉଛନ୍ତି । ମୁଁ ସଙ୍ଗେ ସଙ୍ଗେ କାରରୁ ଓହ୍ଲାଇ ରୁମାଲକୁ ଜୋର କରି ମୁଣ୍ଡକୁ ଚିପି ଧରିଲି ଓ ସଙ୍ଗେ ସଙ୍ଗେ ଆଗ ସିଟରେ ବସାଇ ଦେଲି, ଆମେ ଦୁଇଜଣ ଆଗ ସିଟ୍‌ରେ ବସିପଡ଼ିଲୁ । ମୁଁ ଜୋରକରି ବେହେରା ବାବୁ ଏକାଉଣ୍ଟାଣ୍ଟଙ୍କ ମୁଣ୍ଡକୁ ରୁମାଲ୍‌ରେ ଚାପି ଧରିଥାଏ । ଆମକୁ ଆଣି ବ୍ରହ୍ମପୁରର ଡାକ୍ତରଖାନାରେ ଛାଡ଼ି, ସେ ଦୁହେଁ ଚାଲିଗଲେ-ମେଜର ବଟକୃଷ୍ଣ ମହାନ୍ତି ନିର୍ଦ୍ଦେଶ ଦେଲେ, ମୁଁ ପହଞ୍ଚି ଗାଡ଼ି ପଠାଉଛି ତୁମେ ଡାକ୍ତରଖାନା କାମ ସାର ।

ସେଇଆ ହେଲା-ଆମେ ଡାକ୍ତରଖାନାରେ ଏମରଜେନ୍‌ସୀ ଓ୍ୱାଡରେ ଷ୍ଟିଚ୍ ପକାଇ ଡ୍ରେସିଂ ସାରିଲା ବେଳକୁ ଡ୍ରାଇଭର ଓ ଜଣେ ଲସ୍କର ଆସି ପହଞ୍ଚି ଆମକୁ ଅଫିସକୁ ଆଣିଲେ ।

ସମର ଶିକ୍ଷାର୍ଥୀ ବାହିନୀର ପ୍ରଶିକ୍ଷଣ ଶିବିରରେ ମୋର ପ୍ରଥମ କିରାଣି କାମ ସୁରୁଖୁରୁରେ ସାରି ପୁଣି ଫେରିଲି ପାରଳାଖେମୁଣ୍ଡିର ଏସ୍‌କେ ସି ଜି କଲେଜକୁ ( ୧ମ ଓଡ଼ିଶା ଇଣ୍ଡିପେଣ୍ଡେଣ୍ଟ କମ୍ପାନୀ, ଏନ୍.ସି.ସି, ପାରଳାଖେମୁଣ୍ଡିକୁ)

କିଛିଦିନ ପାଇଁ ପାରଳାଖେମଣ୍ଡି ମହାରାଜାଙ୍କ ଦିଓ୍ୱାନ ଅଫିସ୍ ସମର ଶିକ୍ଷାର୍ଥୀ ବାହିନୀର କାର୍ଯ୍ୟାଳୟ ଥିଲା । କାଳ କ୍ରମେ ତାହା କଲେଜ ପରିସରକୁ ଉଠି ଆସିଲା । ସେଇ ସମୟରେ, ଯେତେକ ପୁରୁଣା ନଥିପତ୍ର ଥିଲା, ସେ ସବୁ ବ୍ରହ୍ମପୁର ଅଫିସକୁ ସ୍ଥାନାନ୍ତର ହୋଇ ସାରିଥିଲା ।

ସେ ଘରଥିଲା ମସ୍ତବଡ଼ । ବହୁ ପ୍ରକୋଷ୍ଠର ଉଆସ । ସେଠାରେ ୩ଜଣ ଲସ୍କର, ୧ ଜଣ ପଙ୍ଖା ପୁଲାର ସହିତ ମୁଁ ଜଣେ ରାଜ୍ୟ ସରକାରଙ୍କ କର୍ମଚାରୀ, ଆଉ ଯେତେ ଥିଲେ ସମସ୍ତେ (ଜଣେ ସୁବେଦାର, ୩ ଜଣ ହାବିଲଦାର ୨ ଜଣ କର୍ପୋରାଲ, ଓ ଜଣେ ସ୍ୱିପର । ପଦାତିକ ବାହିନୀର କର୍ମଚାରୀ ।

ଜୀବନର ପ୍ରଥମ ଚାକିରି । ବାବୁ ବୋଲି ବଡ଼ ଖାତିରି । ସକାଳୁ ଝାଡୁଦାର ଆସି ତାର ନିଜର କାମ ସାରି ମୋ ବସାର କାମ, ଏପରିକି ଲୁଗା ସଫା କରିବା; ଯୋତା ସଫାକରିବା, ଘର ଓଳାଇବା ସବୁକାମ ସାରିଦିଏ ଓ ୧ ୦ଟା ବେଳକୁ ଅଫିସ ଯାଇ, ସମସ୍ତ ସଫା ସୁତୁରା କାମ କରି ଜଗିବସେ-ସତେ ଯେପରି ଜଣେ ଦେଶଭକ୍ତ । କିନ୍ତୁ ଈର୍ଷାପରାୟଣ ହୋଇ ଜଣକୁ ହାଣି ଦେଇଥିବାରୁ, କଚେରୀରେ କେସ ବା ମାମଲା ଚାଲିଥାଏ ଦୀର୍ଘଦିନ ହେବ ଏବଂ ତାକୁ ଗଡ଼ାଇବାକୁ ବା ତାରିଖ କରିବାକୁ ଓକିଲଙ୍କ ସାହାଯ୍ୟ ଆବଶ୍ୟକ-ତେଣୁ ମୋର ସେଠି କାମ ଥାଉ ବା ନ ଥାଉ ଓକିଲଙ୍କ ପାଖରେ ମୁହଁ ମାରି, ଅନ୍ତତଃ ମୁଁ ପାରଳାଖେମେଣ୍ଡି ନଛାଡ଼ିବା ପର୍ଯ୍ୟନ୍ତ ମାମଲାର ତାରିଖ ଘୁଞ୍ଚାଇବାକୁ ଛୋଟିଆ ଅନୁରୋଧଟିଏ କରିଥାଏ ।

ହୁଁ- ମୋର ପାଠପଢ଼ା କିଛିଦିନ ପାଇଁ ବନ୍ଦ ହୋଇ ଯାଇଥିଲା । କଲେଜର ୨ୟ ବର୍ଷ ପ୍ରି-ପ୍ରଫେସନାଲ୍ ଫେଲ୍ ହୋଇ, ପାରଳାର ଗୁମ୍ମାରେ ଗୋଟିଏ ସ୍କୁଲ (ଅଷ୍ଟମରୁ - ମାଟ୍ରିକ୍) ଖୋଲିବା ଚିନ୍ତାରେ ଥିଲେ, ସେଠିକାର ବିଶୋଇ ବାବୁ ଏବଂ ସେ କିପରି ଖବର ପାଇଲେ ଓ ମୁଁ ସେଠାରେ କିପରି ପହଁଞ୍ଚିଲି, ଆଜି ସେ କଥା ମନେ ପଡୁନାହିଁ । ତେବେ, ତାଙ୍କ ପାଖରେ ଥିବା ବନ୍ଧୁକର ସଦୁପଯୋଗ କରିବାର ସୁଯୋଗ ମିଳିଲା । ସ୍କୁଲର ଘଣ୍ଟା ବାଡ଼େଇବାଠାରୁ ଆରମ୍ଭ କରି, ପିଲାଙ୍କୁ ପଢ଼ାଇବା ଦାୟିତ୍ୱ ମୋର ଓ ସ୍କୁଲ ଛୁଟି ହେଲାପରେ, ବନ୍ଧୁକ ଧରି ପକ୍ଷୀ ଶିକାର କରିବା ଏକ ପ୍ରକାର ନିତି-ଦିନିଆ କାମ ବୋଲି ଧରିନେଇଥିଲି । ସ୍କୁଲରେ ପ୍ରାୟ ୨୦ଜଣ ୮ମ ଶ୍ରେଣୀରେ ପଢୁଥିଲେ ଓ ମୁଁ ପାରଳାଖେମୁଣ୍ଡିର ଗୋଟିଏ ବହି ଦୋକାନରୁ ଧାର ନେଇ ପିଲାଙ୍କୁ ପଢ଼ାଉଥିଲି । ତେଣୁ ପ୍ରାୟ ୭-୮ମାସ ପରେ ବାପା ଜାଣିପାରି ମୋ ଉପରେ ବିରକ୍ତ ହେଲେ ଏବଂ ସିଧା-ସିଧା କହିଦେଲେ, ସେ ଧାର ଯେପରି ତୁ ଶୁଝିବୁ ସେ ବନ୍ଦୋବସ୍ତ କର । ସେ ସମୟରେ ଏହି ଦୁଇପଦ କଥା ମୋତେ ବିବ୍ରତ କରିଥିଲା, କାରଣ ସେ ପିଲାଙ୍କଠାରୁ ପଇସା ଆଦାୟ କରିବା ସମ୍ଭବ ନଥିଲା ।

ସମୟ ଗଡ଼ିଚାଲିଲା- ମୁଁ ନିୟୋଜନ କାର୍ଯ୍ୟାଳୟରେ ନାମ ଲେଖାଇ (Employment Exchange) ଚାତକ ଭଳି ଅନାଇ ରହିଥିଲି ଡାକରା ଚିଠିକୁ. (Call letter)। ମୁଁ ସମର ଶିକ୍ଷାର୍ଥୀ ବାହିନୀରେ ସାକ୍ଷାତକାର ଦେବା ପୂର୍ବରୁ, ଜଙ୍ଗଲ ବିଭାଗରେ ମଧ୍ୟ ସାକ୍ଷାତକାର ଦେଇଥିଲି, କିନ୍ତୁ ବୟସ କମ୍ ଥିବାରୁ, ତା' କଟିଯାଇଥିଲା ଓ ଶେଷରେ ଏହି ସମର ଶିକ୍ଷାର୍ଥୀ ବାହିନୀର ୧୧ତମ ଓଡ଼ିଶା ବାଟାଲିଅନ୍‌ରେ ପରୀକ୍ଷା ଦେଇ କୃତକାର୍ଯ୍ୟ ହୋଇଥିଲି ଓ ୯.୧.୧୯୬୫ ଦିନ, କାର୍ଯ୍ୟରେ ଯୋଗ ଦେଇଥିଲି। ସେଦିନ ବୋଧେ ଶନିବାର ଥିଲା କାରଣ ଆମ୍ଭର ୫ ଜଣ କିରାଣି, ବ୍ରହ୍ମପୁରର ହୋଇଥିବାରୁ ସେମାନେ ମୋଠାରୁ ଦିନେ ୨ ଦିନ ଆଗରୁ କାର୍ଯ୍ୟରେ ଯୋଗଦେଇ ସାରିଥିଲେ। ସେମାନଙ୍କ ଭିତରୁ କେବଳ ଏସ୍. ସି. ବେହେରାଙ୍କ ନାମ ମନେଅଛି, କାରଣ ତାଙ୍କ ବାହାଘରକୁ, ଅଫିସରୁ କେହି ନ ଆସିବା ସତ୍ତ୍ୱେ, ମୁଁ ଖଣ୍ଡେ ଛୁଟି ଦରଖାସ୍ତ ପକାଇ ଦେଇ ତାଙ୍କ ବାହାଘରକୁ ପୁରୀ ଆସିଥିଲି, ବରଯାତ୍ରୀ ହିସାବରେ। ହଁ, ପାରଳାଖେମଣ୍ଡି ଅଫିସରେ ଦିନଗୁଡ଼ିକ ବେଶ କଟିଯାଉଥିଲା। ୭ ଦିନରେ ଥରେ, ଶିକାର କରିବା ବା ପକ୍ଷୀ ମାରିବାକୁ ଯିବା ନିଶ୍ଚିତ ଥିଲା, ସେତେବେଳେ ମୋ ପାଇଁ ଗୋଟିଏ ସରକାରୀ ସାଇକେଲ୍ ଥିଲା, ତେଣୁ ସୁବେଦାର ଥାପା ଓ ଅନ୍ୟ ଜଣେ ଦୁଇଜଣ ହାବିଲଦାର ବା କର୍ପୋରାଲ୍ ମିଶି ଖଣ୍ଡେ ଖଣ୍ଡେ .୨୨ (ପଏଣ୍ଟ ଟୁ ଟୁ) ବନ୍ଧୁକ ଧରି ଚାଲିଯାଉଥିଲୁ କୌଣସି ଏକ ଜଙ୍ଗଲକୁ ନତୁବା ସୀତା ସାଗର୍‌କୁ ପକ୍ଷୀ ଶିକାର କରିବା ପାଇଁ। ଅଧିକାଂଶ ସମୟ ହରଡ଼ ଚଢ଼େଇ ଶିକାର କରିବାକୁ ମଜା ଲାଗେ, କାରଣ ଓସ୍ତଫଳ ଖାଇବାକୁ ସେଗୁଡ଼ିକ ବହୁ ପରିମାଣରେ ଓସ୍ତଗଛରେ ଚିଁଚାଁ ହେଉଥାନ୍ତି କିନ୍ତୁ ଅଦୃଶ୍ୟ। ସେଗୁଡ଼ିକ ସବୁଜ ଓ ପତ୍ର ଆଢୁଆଳରେ ତାଙ୍କୁ ଠାବକରିବା କଷ୍ଟକର ତାଙ୍କ ଆଖି ମଧ୍ୟ ପାଚିଲା – ଓସ୍ତ ଗଛର ଫଳ ଭଳି ତେଣୁ ତାଙ୍କୁ ଲକ୍ଷ କରିବା କଷ୍ଟକର। ଶିକାରୀ ଶିକାର କରିବ, ତା ପାଇଁ ପ୍ରସ୍ତୁତ ହୋଇ ଯାଇଥିବା ଶିକାରୀ ପକ୍ଷୀ ଗୋଟିଏ ଡାଳରୁ ଅନ୍ୟ ଡାଳକୁ ଡେଇଁବାକୁ ଲକ୍ଷ୍ୟ କରି, ଗୁଳି ଚାଳନା

କରିବାକୁ ହୁଏ। ମୋ ଗୁଳିରେ ଥରକୁ ୩ଟି ପର୍ଯ୍ୟନ୍ତ ପକ୍ଷୀ ମାରିପାରିଛି, ଟୁଟୁ ବନ୍ଧୁକରେ।

ଜଙ୍ଗଲ ପାହାଡ଼ ଭିତରେ ବି. ୨.୩ ଦିନ କଟିଯାଇଛି ଏଇ ଶିକାରୀ ନିଶା ଯୋଗୁଁ । କଲେଜ ପିଲାଙ୍କୁ ମଧ୍ୟ ରାଇଫଲ ଟ୍ରେନିଂ ଓ ଫାଏରିଂ ଟ୍ରେନିଂ ଦିଆଯାଉଥିଲା, ପିଲାମାନେ ଗୁଳିଚାଳନା ପାଇଁ ମଝିରେ ମଝିରେ ଆସି ଅନୁରୋଧ କରନ୍ତି, ମୁଁ ମଧ୍ୟ ସୁବେଦାର ଓ କେପଟନ ଗୋପାଳ କୃଷ୍ଣ ପାଢ଼ୀ ଭାରପ୍ରାପ୍ତ ଅଫିସରଙ୍କ ଗୋଚରକୁ ଆଣି; ପିଲାଙ୍କୁ ଫାଏରିଂ ଟ୍ରେନିଂ ଦେବାକୁ ନିର୍ଦ୍ଦେଶ ଦିଆଯାଉଥିଲା, ଏଥିରେ ମୋର ଅନ୍ତର୍ନିହିତ ସ୍ୱାର୍ଥ ଥିଲା କିଛି ଗୁଳି ବଳକା ବା ସରପଲ୍‌ସ କରିବା ନିଜ ପାଇଁ। ଏତିକି ବେଳକୁ .୩୩ ଗୁଳିର ହିସାବ ଦେବାକୁ ଚିଠି ଆସି ପହଞ୍ଚିଲା ମୁଖ୍ୟ କାର୍ଯ୍ୟାଳୟ (କଟକରୁ) ଓ ହିସାବ ଦେଖିଲା ବେଳକୁ ଯେତିକି ଗୁଳି ଅଫୁଟା ଥିଲା- ତାଠାରୁ ବହୁତ ଗୁଳି ଖର୍ଚ୍ଚ ହୋଇଛି ବୋଲି ଦେଖା ହୋଇଛି, ତେଣୁ ସେଗୁଡ଼ିକ ପିଲାମାନଙ୍କ ଦ୍ୱାରା ଫୁଟାଇବା ସମ୍ଭବ ନଥିବାରୁ, ଆମେ ପୋଲିସ୍ ଡି.ଏସ୍.ପି. ଓ ରିଜର୍ଭ ଇନିସ୍‌ପେକ୍ଟରଙ୍କ ସାହାଯ୍ୟ ନେଲୁ ଓ ପୋଲିସମାନଙ୍କୁ ପ୍ରାକଟିସ୍ ବା ଅଭ୍ୟାସ ପାଇଁ ସ୍ଥିର କରି ସମସ୍ତ ଗୁଳି ଖର୍ଚ୍ଚ କରିଦେଲୁ। କାଗଜ ପତ୍ର ଠିକ୍ କରିଦେଲୁ ଓ ସମସ୍ତ ଫୁଟା ଓ ଅଫୁଟା ଗୁଳିକୁ - ବ୍ରହ୍ମପୁର ବଟାଲିଅନ୍ ଅଫିସ୍‌କୁ ପଠାଇଦେଲୁ। ସେତେବେଳକୁ ବଟାଲିଅନ୍‌ରୁ ମେଜର ମହାନ୍ତି (ବଟକୃଷ୍ଣ) ବଦଳି ହୋଇ ସାରିଥିଲେ ଓ ତାଙ୍କ ଜାଗାରେ ଜଣେ ମିଶ୍ର (କଲେଜର P.E.T.) ସର୍ଟ ଟାଇମ୍ ଅଫିସର, ଯୋଗଦେଇ ସାରିଥିଲେ, ସେତେବେଳେ ପ୍ରତିରକ୍ଷା ବିଭାଗର ଅଫିସର ମିଳୁ ନଥିବାରୁ ୧୫ ବର୍ଷ ପାଇଁ କଲେଜର ଏନ୍.ସି.ସି. ଅଫିସରମାନଙ୍କୁ Part time ଅଫିସର ରୂପେ ନିଯୁକ୍ତି ଦିଆଯାଉଥିଲା ଓ ତାର ପାରିଶ୍ରମିକ ଭାବେ ନଗଣ୍ୟ କିଛି ଟଙ୍କା ସମ୍ମାନ ସୂଚକ ଦେୟ ବା ଅନରାରିୟମ୍ ଭାବେ ଦିଆଯାଉଥିଲା ସେମାନଙ୍କ ମଧ୍ୟରୁ ଇଚ୍ଛୁକ କଲେଜର ପାର୍ଟଟାଇମ୍ ଏନ୍.ସି.ସି. ଶିକ୍ଷକଙ୍କୁ ତିନି ମାସ ପ୍ରତିରକ୍ଷା ବିଭାଗରେ ପ୍ରଶିକ୍ଷଣ ଦିଆଯାଇ 2nd ଲେଫ୍ଟନ୍ୟାଣ୍ଟ,

Leutant କେପଟେନ୍ ମେଜର ପର୍ଯ୍ୟନ୍ତ ପ୍ରମୋଶନ ଦିଆଯାଉଥିଲା। ସେମାନଙ୍କୁ ୩,୫,୮,୧୨ ବର୍ଷରେ ସତେଜକ ପାଠ୍ୟବଳୀ (ରିଫ୍ରେସର କୋର୍ସ, ପାଶ କରିବାକୁ ପଡୁଥିଲା)

ଏ ଭିତରେ ଘନ ଘନ ଟେଲିଫୋନ୍, ଆସୁଥିଲେ ମଧ୍ୟ କେପଟେନ୍ ପାଢ଼ୀ (ଗୋପାଳ କୃଷ୍ଣ) କାର୍ଯ୍ୟଭାର ହେତୁ ମତେ ବ୍ରହ୍ମପୁର ଛାଡ଼ିବାକୁ ନାରାଜ ହେଉଥିଲେ, କିନ୍ତୁ ମେଜର ମିଶ୍ର (ଯାହାଙ୍କୁ କି ମୁଁ ଦେଖିବାର ସୁଯୋଗ ପାଇନଥିଲି, ଯଦିଚ ସେଇ ଅଫିସରୁ କାଗଜ ପତ୍ର ନେଇ ତାର ଏକାଉଣ୍ଟାଣ୍ଟ୍ କଟକ ଯାଇ ଅଡିଟ୍ କରିଥିଲେ ଓ ମୁଁ ଦିନେ ଡେରିରେ ପହଞ୍ଚିଲା ବେଳକୁ ଡୁପ୍ଲିକେଟ୍ ଭାଉଚର ଗୁଡ଼ିକରେ ନିଜ ହାତରୁ ପଇସା ଦେଇ, ରେଭେନ୍ୟୁ ଷ୍ଟାମ୍ପ କିଣି ଲଗାଇ, ଅଡିଟ୍ କରାଇ ନେଇଥିଲେ ଓ ମୂଳ ବିଲ୍ ଭାଉଚରଗୁଡ଼ିକ ଅନ୍ୟ ଗୋଟିଏ ନଥି ମଲାଟ ଭିତରେ ଥିବାରୁ, ତାକୁ ଖୋଲିବାକୁ ସମୟ ପାଇ ନଥିଲେ। ମୁଁ କଟକରେ ପହଞ୍ଚି, ସମସ୍ତ ଖର୍ଚ୍ଚର ହିସାବ ଦେଇ ଅଡିଟ୍ ରିପୋର୍ଟ ଠିକ୍ କରି ଫେରିଥିଲୁ। ମୁଁ କେବଳ ଗୋଟିଏ ରାତ୍ରି ବ୍ରହ୍ମପୁର ଅଫିସରେ ରହି, ସକାଳୁ ସକାଳୁ ପାରଳା ଫେରି ଆସିଥିଲି।

ତାର ୪-୫ ଦିନ ପରେ ହଠାତ୍ ପାଢ଼ୀ ସାର ଆସି କହିଗଲେ, "ତୁମକୁ ବଟାଲିଅନକୁ ଫେରିଯିବାକୁ ପଡ଼ିବ। ତେଣୁ, ସବୁ କାଗଜ ପତ୍ର ସୁବେଦାରଙ୍କୁ ବୁଝାଇ ତୁମର ଯିବାର ବ୍ୟବସ୍ଥା କର"।

ମୁଁ ମଧ୍ୟ ଠିକ୍ ଦୁଇଦିନ ଭିତରେ ସବୁ କାଗଜ ପତ୍ରର ଚିଠା ତିଆରି ପୂର୍ବକ, ସବୁ କାମ ବୁଝାଇ ବ୍ରହ୍ମପୁର ଯିବାକୁ ପ୍ରସ୍ତୁତ ହୋଇଗଲି ଓ ସମସ୍ତ ଷ୍ଟାଫ୍ ମୁଁ ଚାଲିଯିବାକୁ ବସିବାରୁ ମନଦୁଃଖରେ ଭାଙ୍ଗି ପଡ଼ିଥିଲେ। ସତେ ଯେପରି ବାରର ଜଣେ ସଦସ୍ୟ, ସବୁଦିନ ପାଇଁ ଚାଲିଯାଉଛି।

ମୁଁ ମୋର ଖଣ୍ଡିଏ ଟିଣ ବାକ୍ସ ଓ ବେଡିଂ ଧରି ବ୍ରହ୍ମପୁର ଅଫିସରେ ପହଞ୍ଚିଲି : ୧୦ଟା ବେଳେ ଅଫିସ ଖୋଲିଲା। ଅଫିସର ଆସି ତାଙ୍କ ଚୌକିରେ ବସିବା ପୂର୍ବରୁ ଅଫିସର ମୁଖ୍ୟ କିରାଣି, ଖବର ଦେଲେ ଯେ,

ମୁଁ ଆସିଯାଇଛି । କିଛି ସମୟ ପରେ, ଲସ୍କର ଜଣେ ଆସି ମତେ ଅଫିସର ଡାକୁଥିବା ଖବର ଦେଲେ, ମୁଁ ମଧ ମୋର ସେଇ ନିଜର ଷ୍ଟାଇଲ୍‌ରେ ଗୋଡ଼ ବାଡ଼େଇ "ଗୁଡ ମର୍ଣ୍ଣି ସାର୍" କହି ଠିଆହେଲି ତାଙ୍କ ଟେବୁଲ୍ ସାଇଡରେ ।

ସେ ମହାଶୟ ମୋର ମୁହଁକୁ ଚାହିଁ, ପଚାରିଲେ ମୁଁ ୩ ମାସ ହେଲା ପାଢ଼ୀ ବାବୁଙ୍କୁ, ତୁମକୁ ପଠାଇ ଦେବାକୁ କହି କହି ଥକି ଗଲିଣି ତାଙ୍କର ଏବେ ମନେ ପଡ଼ିଲା, ନା ତୁମର ଆସିବାର ଇଛା ନଥିଲା ।

ତା ଉତ୍ତରରେ ମୁଁ କେବଳ ଏତିକି କହିଲି, ଆପଣ କହିଥିବା କଥା ସେ ମତେ ଜଣାଇ ନାହାନ୍ତି, କି ମୋର ସେଠି ଭାଇ, ବଂଧୁ, କୁଟୁମ୍ବ କିଏ ଅଛନ୍ତି ଯେ ମୁଁ ତାଙ୍କୁ ଛାଡ଼ି ଆସିବାକୁ ଅମଙ୍ଗ ଥିଲି । ସେ ମତେ ୪ ଦିନ ତଳେ ଖବର ଦେଲେ ଏବଂ ମୁଁ ମୋର ସମସ୍ତ କାର୍ଯ୍ୟର ଚିଠା ଧରାଇ ଦେଇ ଆଜି ହିଁ ସକାଳୁ ସକାଳୁ ବସ୍ ଧରି ପହଁଞ୍ଚିଲି ।

ହଁ ପହଞ୍ଚିଗଲ - ମୋର ବହୁତ ଉପକାର କଲ ଯେତେ ସବୁ ଇଣ୍ଡିପ କମ୍ପାନୀର କାଗଜ ପତ୍ର ଅଛି ତାକୁ କିଏ ସେଟରାଇଟ୍ କରିବ, ଗୋଟାଏ ରୁମ୍ ମାଡ଼ି ବସିଛି । ତାକୁ ସଜାଡ଼ ।

ସଜଡ଼ା ହେବାର କିଛି ନାହିଁ : ଯାହା ସବୁ ବଣ୍ଡଲ ବାନ୍ଧି ପଠାଇଥିଲି, ତା' ଯଦି ଠିକ୍ ଥିବ ତେବେ ସଜାଡ଼ିବାର ଆବଶ୍ୟକତା କ'ଣ ?

ତାପରେ ବାବୁଙ୍କର ଇଂରାଜୀ ଗାଳି, ଯାହା ମନକୁ ଆସିଲା ଗପିଗଲେ ପରେ - ପାଟିକରି କହିଲେ, ଆଇ ୱିଲ୍ ଶୁଟ୍ ୟୁ ।

ମତେ ହସ ମାଡ଼ିଲା- ମୁଁ ହସିଦେଲି -

ସେ ପୁଣି ସେଇଭଳି ଗର୍ଜନ କରି ପାଖରେ ରଖିଥିବା ତାଙ୍କର ନିଜସ୍ୱ .୨୨ ବନ୍ଧୁକକୁ ମୋ ଆଗରେ ଟେକି ଧରିଲେ ।

- ମୁଁ କିନ୍ତୁ ସେଇଭଳି ହସି ହସି କହିଲି, ସାର ମୋ ଘରେ ୨-୨ଟା ରିଭଲଭର । ଆଉ ପାରଳାଖେମଣ୍ଡିରେ ଏ ବନ୍ଧୁକ ସଙ୍ଗରେ ଖେଳି

ଖେଳି, ମୋ ହାତ ବିଣ୍ଡି ହୋଇଯାଇଛି, ଆଉ ମତେ ଯାକୁ ଦେଖାଇ କ'ଣ ଡରାଉଛନ୍ତି। ମୁଁ ଜଣେ ଏକ୍ସ ଏନ୍.ସି.ସି. କେଡେଟ୍, ଏଣ୍ଡ ଟ୍ରେନଡ୍ ସୋଲଜର।

ସେ ଆଉ କ୍ରୋଧ ସମ୍ବରଣ କରି ନପାରି, ସୁବେଦାର ମେଜର (ଜଣେ ଗୁର୍ଖା)ଙ୍କୁ ଡାକି ଆଦେଶ ଦେଲେ। "କିପ୍ ହିମ୍ ଅଣ୍ଡର ହାଉସ ଆରେଷ୍ଟ"।

ଆଦେଶ ପାଳନ ହେଲା ଅଫିସର ଉପର ମହଲାରେ ଗୋଟିଏ ଛୋଟିଆ ରୁମ୍ ସଫା ହେଲା। ମୋ ବାକ୍ସ ଓ ବେଡ଼ ହୋଲଡର। P.I. Staff (ପରମାନେଣ୍ଟ ଇନ୍‌ସ୍‌ଟ୍ରକ୍‌ଟର)ଙ୍କ ତତ୍ତ୍ୱାବଧାନରେ ଉପର ମହଲାକୁ ନିଆଗଲା ମତେ ମଧ ଠିକ୍ ୪ଟା ବେଳେ। ସୁବେଦାର ମେଜର, ଡାକି ନେଇ ଉପର ମହଲାରେ, ମୋ ବେଡିଂ ଓ ବକ୍ସ ଦେଖାଇ ଦେଇ; କ୍ୱାଟର ମାଷ୍ଟର ଚାର୍ଯରେ ଥିବା ଜଣେ ସୁବେଦାର ମେଜର, ଦୁଇଜଣ ସୁବେଦାର ଓ ୨/୩ଜଣ ହାବିଲ୍‌ଦାର ଆସି ମୋର ଖଟ, ଚୌକି, ଟେବୁଲ୍ ଇତ୍ୟାଦିର ବନ୍ଦୋବସ୍ତ କରିଗଲେ ଓ କହିଗଲେ।

"ବାବୁ, ୱାଚମେନ ଆସିବ (ସବୁ ହିନ୍ଦୀରେ)। ଆପଣ ଦରକାର ପଡ଼ିଲେ, ତଳ ରୁମରେ ତା ସାଙ୍ଗରେ ଶୋଇବେ, ଖାଇବା ପାଇଁ ମୁଁ ଠିକ୍ ନ'ଟା ଭିତରେ ଡିନର ପଠାଇ ଦେବି, ସକାଳୁ ଦେଖା ହେବ, ଗୁଡ୍ ନାଇଟ୍।"

– ତାପରେ ଚାଲିଲା ହାଉସ୍ ଆରେଷ୍ଟ। ମୁଁ ତଳକୁ ଯାଇ ଦେଖାକରି, ଗୋଡ଼ ବାଡ଼େଇ ଗୁଡ୍ ମର୍ଣ୍ଣି କହି ସାଲ୍ୟୁଟ ମାରିବାରୁ ବଞ୍ଚିଗଲି। ସବୁଦିନର କାର୍ଯ୍ୟ କିଛି ନଥିବାରୁ ସୁବେଦାର ମେଜରଙ୍କୁ କହି ତାଙ୍କ ମେସରୁ କିଛି ହିନ୍ଦୀ ବହିଆଣି ପଢ଼ିବାକୁ ଲାଗିଲି – ଏମିତି – ଏମିତି ୪–୫ ଦିନ କଟିଗଲା।

ଦିନେ ଜଣେ ସୁବେଦାର ଆସି କହିଲେ, ଇଣ୍ଡିପେଣ୍ଡେଣ୍ଟ କମ୍ପାନୀର ସବୁ କାଗଜ ପତ୍ରର ଚିଠା କଟକ ଏନ୍.ସି.ସି. ନିର୍ଦ୍ଦେଶକଙ୍କ ଅଫିସକୁ ଯିବ ଓ

ସେଠାରୁ ଯେଉଁଭଳି ଭାବେ ନିର୍ଦ୍ଦେଶ ଆସିବ, ସେହିଭଳି ସେଗୁଡ଼ିକୁ ଡିସପୋଜ ବା ବିନିଯୋଗ କରାଯିବ। ସାର ୧୫ ଦିନ ଭିତରେ ସାରିବାକୁ କହିଛନ୍ତି।

ମୁଁ ମନେ ମନେ ଭାବିଲି, ୧୫ ଦିନ - ଯାହା ହେଉ ଅନ୍ତତଃ ୧୫ ଦିନ ପର୍ଯ୍ୟନ୍ତ ଘୋଡ଼ା ମୁହଁ ଦେଖିବାରୁ ବଞ୍ଚିଗଲି। ଏବେ ତ ସପ୍ତାହେ ଚାଲିଗଲାଣି, ଆଉରି ୧୫ ଦିନ ମାନେ ୨ ସପ୍ତାହ। ମନେ ମନେ ଖୁସି ହୋଇ କହିଲି, ମତେ ସାହାଯ୍ୟ କରିବାକୁ କମ୍‌ସେ କମ୍ ଜଣେ ଲସ୍କରର ବ୍ୟବସ୍ଥା କରନ୍ତୁ।

ହଁ - ସେଥିପାଇଁ, ମେଜର ରାଓ (ଆର୍ମିରେ ହାବିଲଦାର, ତିନି ଫିତା (ସାର୍ଟର ବାହୁରେ ଲଗାଯାଇଥିବା ଫିତା) ବାଲାଙ୍କୁ ଓ ଅନ୍ୟ ଜୁନିୟରମାନଙ୍କୁ ମଧ୍ୟ ସମ୍ମାନ ପୂର୍ବକ ଡକାଯାଇଥାଏ। ମେଜର ବା ହାବିଲଦାର ରାଓ ସିଗନାଲ କମ୍ପାନୀର, ତେଣୁ ସେମାନେ ଶିକ୍ଷିତ ଓ ଚାଲାକ ଲୋକ ମଧ୍ୟ । ଯୁଦ୍ଧ ବେଳେ ସେମାନଙ୍କ କାର୍ଯ୍ୟ ସବୁଠାରୁ କଠିନ ଓ ତାଙ୍କଦ୍ୱାରା ଯୁଦ୍ଧ ପରିଚାଳିତ ହୁଏ କହିଲେ ଅତ୍ୟୁକ୍ତି ହେବନାହିଁ ।

ସିଏ କାଲିଠୁ ଆସି ଆପଣଙ୍କୁ ସାହାଯ୍ୟ କରିବେ । ମୁଁ ବି ଖୁସିହୋଇ ଗଲି । ଏକୁଟିଆ ବସି ବସି ବିରକ୍ତ ଲାଗୁ ଥାଏ । କେତେବେଳେ କିଏ ଆସି ମୁହଁ ମାରି ପଦେ ଅଧେ କଥାକହି ଚାଲିଯାଉଥାନ୍ତି କିନ୍ତୁ ଚା, ଜଳଖିଆ ମଧ୍ୟାହ୍ନ ଭୋଜନ ଓ ରାତ୍ରି ଭୋଜନ ଠିକ୍ ସମୟରେ ପହଞ୍ଚିଯାଏ । ସେଥିରେ ପୁଣି ବେଳେ ବେଳେ ସ୍ପେସିଆଲ (ବିଶେଷ ବା ଅଧିକ ସ୍ୱାଦିଷ୍ଟ) ଖାଦ୍ୟ ଆସି ପହଞ୍ଚି ଯାଉଥିଲା ।

ସନ୍ଧ୍ୟାବେଳେ ଜଣେ କେହି ଆସି ତାଙ୍କର ମେସକୁ (ତାଙ୍କ ପାଇଁ ଉଦ୍ଦିଷ୍ଟ ରହିବା ଓ ଖାଇବା ସ୍ଥଳି, ସେଠାରେ ଖାଦ୍ୟ ଓ ପାନୀୟର ମଧ୍ୟ ବ୍ୟବସ୍ଥା ଥାଏ) । ଡାକିନିଅନ୍ତି ।

ଏ ଭଳି ୨/୪ଦିନ ଭିତରେ ମୁଁ ସେଇ ହାବିଲଦାରଙ୍କୁ ଫାଇଲ୍ ଦେଇ, କେବଳ ଡିକ୍ଟେସନ ଦିଏ ଓ ସେ ଲେଖି ଚାଲନ୍ତି । ମୁଁ ଆଗରୁ ସମସ୍ତ

ଚିଠା କରି, ଚିଠା ଗୁଡ଼ିକୁ ଗୋଟିଏ ନଥିରେ ବାନ୍ଧି ରଖିଥିଲି, ତେଣୁ ପ୍ରତି ବିଭାଗର ଚିଠା ଧରାଇ ଦେଇ ମୁଁ ନିଶ୍ଚିନ୍ତ ରହିଲି । କେବଳ ଏକାଉଣ୍ଟସ୍ ବିଭାଗ ଓ ଲଜେଷ୍ଟିକ୍ ବିଭାଗର ସମସ୍ତ କାଗଜପତ୍ର ଆଗରୁ ପଠାଇ ଥିବାରୁ ସେ ଗୁଡ଼ିକର ପଠାଇଥିବା ଓ ବଟାଲିଅନ ପାଇଥିବା ରସିଦ୍ ଗୁଡ଼ିକ ଏକାଠି କରି ନଥିରେ ବାନ୍ଧି ରଖିଦେଲୁ । ପ୍ରାୟ ୭ ଦିନ ଭିତରେ ସବୁ ସରିଗଲା । ତେବେ ସବୁ ଗୁଡ଼ିକ ପ୍ରତ୍ୟେକ ବିଭାଗର ଗୋଟିଏ ଗୋଟିଏ ନଥି ପ୍ରତିଦିନ ଦେବାକୁ ମନସ୍ଥ କଲୁ ଓ ତା ମଧ୍ୟ ବହୁ ପୂର୍ବରୁ ସାରିଦେଲୁ ।

ତାରି ଭିତରେ 11th ଓଡ଼ିଶା ବଟାଲିଅନ ମଧ୍ୟ ଭାଙ୍ଗିବାର ପ୍ରସ୍ତାବ ଆସିଲା ଓ ତା ବଲାଙ୍ଗିର ଉଠିଯିବାକୁ ସରକାର (ଡିଫେନ୍ସ)ଙ୍କ ଆଦେଶ ଆସିବାରୁ, ସମସ୍ତ ଅଫିସ୍ ଚଳ ଚଞ୍ଚଳ ହୋଇ ଉଠିଲା ।

ଏଠି ଆଉଗୋଟିଏ ବଡ଼ କଥା ନ ଲେଖିଲେ ଭୁଲ୍ ହୋଇଯିବ ମତେ ଗୃହବନ୍ଦୀ ରଖିବାର ଖବର ପାଇ ପାରଳାର ସୁବେଦାର କୃଷ୍ଣବାହାଦୁର ଥାପା, ଆସି ପହଁଞ୍ଚିଲେ କିଛି କାଗଜ ପତ୍ର ଆଣି ଏବଂ ମୋ ଖବର ଶୁଣି ସେ ଚେତାଇ ଦେଇଗଲେ, ସୁବେଦାର ମେଜରଙ୍କୁ-

"ବାବୁକା ଯୈସେ କୁଛ ତକ୍‌ଲିଫ୍ ନହିଁ ହୋଗା ଇସକେଲିଏ ଖ୍ୟାଲ୍ ରଖନା"

ବାବୁର ଯେପରି କୌଣସି ଅସୁବିଧା ନ ହୁଏ ସେଥିପାଇଁ ଦୃଷ୍ଟି ଦେବାକୁ କହିଗଲେ ସୁବେଦାର ଥାପା । ଏମିତି ପାଖାପାଖି ୩ ମାସ ବିତିଗଲା କିଛି ଜଣା ପଡ଼ିଲା ନାହିଁ; ମୋର ବଦ ଅଭ୍ୟାସ କିଛି ନଥିଲା କିନ୍ତୁ ଏଇ ହାଉସ୍ ଆରେଷ୍ଟ ସମୟରେ ସିଗାରେଟ ପିଇବା ଆରମ୍ଭ ହେଲା । ଆଗରୁ ମଦ ପିଉଥିଲି, ଯେତେବେଳେ ମୁଁ ଧରମଶାଳାରେ ଟ୍ରେନିଂ ନେଉଥିଲି, କାରଣ ସେଠାରେ ମେ ମାସରେ ବି ତଳେ ୫ ଉପରେ ୫କମ୍ବଳ ଘୋଡ଼େଇ ହୋଇ ମଧ୍ୟ ଶୀତରେ ଥରୁଥିଲି । ତେଣୁ ଜଣେ କ୍ୟାପଟେନ (କେରଳୀ) ମୋ ପାଇଁ ରାତ୍ରି ଭୋଜନ ପୂର୍ବରୁ ମେସ୍ ବୟକୁ କହି ୨ପେଗର ବନ୍ଦୋବସ୍ତ କରିଥିଲେ ତା ଆସ୍ତେ ଆସ୍ତେ ବଢ଼ିଚାଲିଲା ଓ ଆଜି ପର୍ଯ୍ୟନ୍ତ ତାହା ବନ୍ଦ ହୋଇ ପାରିନାହିଁ ।

ହଁ, ସମୟ ଆସିଲା, ପ୍ରଥମ ଓଡ଼ିଶା ସ୍ୱାଧୀନ କମ୍ପାନୀ, ପାରଳାଖେମଣ୍ଡି ସହିତ, ୧୧ଦଶ ଓଡ଼ିଶା ବଟାଲିଅନ ବ୍ରହ୍ମପୁର ମଧ୍ୟ ବନ୍ଦ ହୋଇଯିବ । ତେଣୁ କାର୍ଯ୍ୟ ବଢ଼ିଗଲା କଣ କରାଯିବ । ବଡ଼ବାବୁ ବୋଧେ ମୋର ସାହାଯ୍ୟ ମାଗିବାରୁ ମୁଁ ସିଧା ସିଧା ମନା କରିଦେଲି "ନୋ ପେ ନୋ ୱାର୍କ" । କାରଣ ମୁଁ ୩ ମାସର ଦରମା ପାଇ ନ ଥାଏ, ନନ୍ କମିସନ୍ଡ ଅଫିସର ମେସ୍ ପାଇଁ କୌଣସି ପଇସା ନ ଦେଇ ଖାଇ ଚାଲିଥିଲି ।

ଶେଷରେ କଥାଗଲା ମେଜର, ଅଫିସର କମାଣ୍ଡିଙ୍କ କାନକୁ ଓ ମୋ ଦରମା ବିଲ୍ ଦୁଇଦିନ ଭିତରେ ଆସି ପହଞ୍ଚିଲା । ଦରମାଟା ସେତେବେଳେ ବୋଧେ ଟ.୯୨.୦୦ ମହଙ୍ଗା ଭତ୍ତା ୬୧.୦୦ରେ ପହଞ୍ଚି ଯାଇଥିଲା । ମୁଁ ଯେତେବେଳେ (୯.୧.୬୫)ରେ କାର୍ଯ୍ୟରେ ବାହିଲ ହୋଇଥିଲି ମୋର ଦରମା ଥିଲା ଟ.୮୦.୦୦ ଓ ମହଙ୍ଗା ଭତ୍ତା ଟ୫.୦୦ ।

୧୧ତମ ଓଡ଼ିଶା ବଟାଲିଅନ ବ୍ରହ୍ମପୁରରୁ ଉଠିଗଲା ବଲାଙ୍ଗିର । ମୋର୍ ବଦଳି ହୋଇଗଲା ପ୍ରଥମ ଓଡ଼ିଶା ସି.ଟି.ସି (କମ୍ପୋଜିଟ ଟେକନିକାଲ କମ୍ପାନୀକୁ, ଯାହାକି ବ୍ରହ୍ମପୁର ଇଞ୍ଜିନିଅରିଂ ସ୍କୁଲ ଭିତରେ ସ୍ଥାନିତ ହୋଇଥିଲା । ସେଠାରେ ଶ୍ରୀଯୁକ୍ତ ପାଢ଼ୀ (B. Padhy) ଇଞ୍ଜିନିଅରିଂ ସ୍କୁଲର ଏନ୍.ସି.ସି.ର ପାର୍ଟ ଟାଇମ୍ ଅଫିସର ଭାବେ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଏନ୍.ସି.ସି. ଅଫିସର ଦାୟିତ୍ୱ ମଧ୍ୟ ତୁଲାଉଥିଲେ । ଏହି ସ୍କୁଲରେ କାର୍ଯ୍ୟକାଳ ଭିତରେ ପାରଳାରେ ଥିବା ପଙ୍ଖା ଟାଣୁଥିବା ଲବଣୀ ଜେନାକୁ, କେବଳ ଏକ ଟେଲିଫୋନ୍ ଦ୍ୱାରା ପଙ୍ଖା ଫୁଲର୍‌ରୁ ଲସରକୁ ଉନ୍ନତି ବା ପ୍ରମୋସନ ହୋଇଥିଲା । ପଙ୍ଖା ଫୁଲରର ବର୍ଷକୁ କାର୍ଯ୍ୟକାଳ କେବଳ ୬ ମାସ । ତେବେ କଟକ ଡି ପି ଆଇ ଅଫିସର ପି.ଭି.ଆର ମୂର୍ତ୍ତୀଙ୍କ ଦୟାରୁ ତାର ଲସ୍କର ପୋଷ୍ଟିଂ ସେହି ଅଫିସରେ ହୋଇ ଯାଇଥିଲା ।

କେପେଟେନ୍ ପାଢ଼ୀ ଇଞ୍ଜିନିୟରିଂ ସ୍କୁଲର ଶିକ୍ଷକ ଥିବା ସତ୍ତ୍ୱେ ପ୍ରଥମ ଓଡ଼ିଶା କମ୍ପୋଜିଟ ଟେକନିକାଲ, ସମର ଶିକ୍ଷାର୍ଥୀ ବାହିନୀର ଦାୟିତ୍ୱ ମଧ୍ୟ ତୁଲାଉଥିଲେ ।

ଥରେ ଖରାଦିନେ ୨ୟ ଓଡ଼ିଶା ବାଟାଲିଅନର ପ୍ରଶିକ୍ଷଣ ଶିବିର ଆୟୋଜିତ ହୋଇଥିଲା । ଲସ୍କର ବନମାଳୀ ବେହେରା, ମୋ ଘରକାମ ମଧ୍ୟ ମଝିରେ ମଝିରେ କରିନିଅନ୍ତି। ନୂଆ ହୋଇ ବାହା ହୋଇଥିବାରୁ, ପରିବା ପତ୍ର ଓ ବେଳେ ବେଳେ ଅନ୍ୟାନ୍ୟ ଛୋଟ ମୋଟ କାମ ମଧ୍ୟ କରିଦିଅନ୍ତି। ବୟସ ତୁଳନାରେ ତାଙ୍କର ସ୍ୱାସ୍ଥ୍ୟ ଅବସ୍ଥା ଭଲ ନଥିବାରୁ; କଠିନ କାର୍ଯ୍ୟ କରିବାକୁ ମୁଁ ବାରଣ କରୁଥାଏ। କିନ୍ତୁ ଅଫିସରଙ୍କ ନିର୍ଦ୍ଦେଶ ହେଲା ସିଏ ଶିବିରକୁ ଯିବେ। ତାହାହିଁ ହେଲା ୧ ୨ ଦିନ ପରେ ଶିବିରରୁ ଆସି ସିଏ ହସ୍‌ପିଟାଲ୍‌ରେ ଭର୍ତ୍ତି ହେଲେ। ଶୁଣୁ ଶୁଣୁ କଣକି ତାଙ୍କୁ ଭଣ୍ଡାର ଘରର ଖାଦ୍ୟ ଓ ତାଲିମ ଦେବା ପାଇଁ କିଛି ଆବଶ୍ୟକ ଜିନିଷ, ରକ୍ଷଣାବେକ୍ଷଣ ପାଇଁ ନିଯୁକ୍ତି ଦିଆଯାଇଥିଲା, ଯେଉଁଠିକି ବସ୍ତା ବସ୍ତା ଜିନିଷ ମଧ୍ୟ ବୁହାବୋହି କରିବାକୁ ପଡ଼ିଥାଏ।

ଶିବିର ଶେଷ ହେବା ପରେ ଡାକ୍ତରଖାନାରେ ଭର୍ତ୍ତି ହୋଇ ୨ ଦିନ ପରେ ଇହଲୀଳା ସମ୍ୱରଣ କଲେ। ମୃତ୍ୟୁ ଖବର ଆସି ଆମପାଖରେ ପହଁଞ୍ଚିଲା ବେଳକୁ ପ୍ରାୟ ଗୋଟାଏ ବାଜି ସାରିଥିଲା ଏବଂ ସେତେବେଳେ ତାଙ୍କ ଘରକୁ କିଛି ଟଙ୍କା ପଠାଇବାର ଆବଶ୍ୟକତା ଥିଲା ଏବଂ ଏହା ସରକାରୀ ସହାୟତା ପାଣ୍ଠି ଭାବେ । ସତ୍କାର ପାଇଁ ନିୟମ ଥିବା ସତ୍ତ୍ୱେ - ପାଢ଼ୀ ମହାଶୟ ଟଙ୍କା ଦେବାକୁ ମନା କରିଦେଇ ଘରକୁ ଚାଲିଗଲେ।

ମୋର ଶତ ଅନୁରୋଧ ବିଫଳ ହେଲା ଏବଂ ସିଏ ଅଫିସ ଛାଡ଼ି ଚାଲିଯିବାରୁ ମୋ ମୁଣ୍ଡରେ କିଛି ପଶିଲାନି; ମୁଁ ମଧ୍ୟ ସାଇକେଲ ଖଣ୍ଡିକ ଧରି ତାଙ୍କ ଘରେ ପହଞ୍ଚିଲି। ସେଠାରେ ବେଶ ଏକରକମ ଝଗଡ଼ା ପରିସ୍ଥିତି ଉପୁଜିଲା - ବାଧ୍ୟ ହୋଇ ତାଙ୍କ ସହଧର୍ମିଣୀ ଆସି ମୋ ଠାରୁ ଟିକିନିଖି ବୁଝିଗଲେ। ପରିସ୍ଥିତି କ'ଣ ଓ ସେ ମଧ୍ୟ କହିଲେ ଟଙ୍କା ଦେବାର ଯଦି ନିୟମ ଅଛି ତେବେ ଦେବାରେ ଅସୁବିଧା କ'ଣ। ମୁଁ କହିଲି, ସେ ଯଦି ନିୟମ ଜାଣି ନାହାନ୍ତି, ଅନ୍ୟ ଅଫିସରୁ ବୁଝି ନିଅନ୍ତୁ, ନଚେତ ମତେ ଅଗ୍ରିମ ରୂପେ ଟ. ୩୦୦ଙ୍କା ଦିଅନ୍ତୁ। ମୁଁ ମୁଖ୍ୟ ଅଫିସକୁ ଲେଖି ଟଙ୍କା

ଆଣିବା ବ୍ୟବସ୍ଥା କରିବି, ନଚେତ୍ ମୋ ଦରମାରୁ ଦେଇଦେବି, ଶେଷରେ ତାଙ୍କ ସହଧର୍ମିଣୀ ମତେ ଟ. ୩୦୦ଙ୍କା ଆଣି ଦେଲେ, ଏବଂ ମୁଁ ଧାର ସୂତ୍ରରେ କାଗଜରେ ଲେଖିଦେଇ ଟଙ୍କା ଆଣି, ବେହେରାଙ୍କ ଘରକୁ ପଠାଇ ଥିଲି ଓ ୭ ଦିନ ମଧ୍ୟରେ କେବଳ ଫୋନ ଦ୍ୱାରା କଟକ ଅଫିସକୁ ଖବର ଦେଇ ୩୦୦ ଟଙ୍କାର ଏଲଟ୍‌ମେଣ୍ଟ (ଆବଣ୍ଟନ ପତ୍ର) ଲେଟର ଆଣିବାକୁ ସକ୍ଷମ ହୋଇଥିଲି।

ଏ ଘଟଣା ପାଇଁ ମୋ ସି.ସି.ଆର ବା ଗୋପନ ଚରିତ୍ର ପ୍ରତିବେଦନ ଯାହାକି ବର୍ଷକୁ ଥରେ ଉଚ୍ଚପଦସ୍ଥ ଅଫିସକୁ ଯାଏ ତାହା "ଅଫିସର ବା ସିନିଅରଙ୍କ ପ୍ରତି ଆଚରଣ ଠିକ୍ ନଥିବା ଲେଖି ପଠାଇ ଦେଇଥିଲେ ପାଢ଼ୀ ମହାଶୟ।"

ଏବଂ ଆଉଥରେ କିଛି ପ୍ରତିରକ୍ଷା ବାହିନୀର ଜିନିଷ ବିକ୍ରି ତଥା କ୍ଷତି ସମ୍ବନ୍ଧୀୟ ଟଙ୍କାର ଟ୍ରେଜେରୀ ଚାଲନ କରିବା ପାଇଁ ସମସ୍ତ କାଗଜ ପତ୍ର ଠିକ୍ କରି, ଏକାଉଣ୍ଟାଣ୍ଟଙ୍କୁ ଦେଇ ମୁଁ କିଛିଦିନ ପାଇଁ ଗ୍ରାମକୁ ଆସିଥିଲି, ଫେରିଲାବେଳେ – ଭୁବନେଶ୍ୱର ମୁଖ୍ୟ ଡି.ପି.ଆଇ ଅଫିସରେ ମୁହଁ ମାରି ଯିବାକୁ ସ୍ଥିର କରି, ଆସି ଦେଖେତ ମୋ ନା'ରେ ମସ୍ତବଡ଼ ଅଭିଯୋଗ ପତ୍ର ଆସି ପହଞ୍ଚି ଯାଇଛି ଯେ "ମି. ମହାନ୍ତି, ଟଙ୍କା ଅଫିସରେ ଦାଖଲ ନକରି, ଛୁଟିରେ ଘରକୁ ପଳାଇଛନ୍ତି, ତେଣୁ ତାଙ୍କ ପ୍ରତି ବିହିତ କାର୍ଯ୍ୟାନୁଷ୍ଠାନ କରାଯାଉ।"

ଅଫିସର ଏତିକି ମନେ ରଖିଲେ ନାହିଁ, ଯେ ଟଙ୍କା ଟ୍ରେଜେରୀରେ ପୈଠହେବା ପାଇଁ ଟ୍ରେଜେରୀ ଚାଲାନ ନିଜେ ଦସ୍ତଖତ କରିଛନ୍ତି ଓ ତା' ହିସାବ ରକ୍ଷକଙ୍କ ପାଖରେ ରଖାଯାଇଛି। ସେ ଟଙ୍କା ବି ହିସାବ ଖାତାରେ ଚଢ଼ା ଯାଇଛି। ତାହା ଏକାଉଣ୍ଟାଣ୍ଟ୍ ବା ହିସାବ ରକ୍ଷକଙ୍କ ସମ୍ପୂର୍ଣ୍ଣ ଦାୟିତ୍ୱ।

ଏହା ଶୁଣିଲା ପରେ, ସେ ଚିଠି ସେଇଠି ଫାଇଲରେ ରହିଲା ଓ ମୁଁ ଯାଇ ତାର ବିସ୍ତୃତ ବିବରଣୀ ସହିତ ଚିଠି କରିବାକୁ ମତେ କୁହାଗଲା। ଯାହା ଫଳରେ କି ମୁଁ ବ୍ରହ୍ମପୁର ଆସି ତାକୁ ସଜାଡ଼ି ଥିଲି, ନଚେତ ତା' ପ୍ରଥମ ଦଣ୍ଡ ରୂପେ ମୋର ଗୋପନ ଚରିତ୍ର ପ୍ରତିବେଦନ ଭାବେ ୨ୟ ଦଣ୍ଡବିଧାନର ସୂତ୍ରପାତ କରିଥାନ୍ତା।

ଏହାର କିଛି ଦିନ ପରେ, ମତେ ସାମୟିକ ଭାବେ ପଦୋନ୍ନତି ଦିଆ ହୋଇଥିଲା କିନ୍ତୁ ଅନ୍ୟ ଜଣକୁ ଯିଏକି ମୋ ଠାରୁ କାର୍ଯ୍ୟ ବା ବାହିଲରେ କନିଷ୍ଠ ତାଙ୍କୁ ସେ ସେ ପଦୋନ୍ନତି ଦେବା ପାଇଁ ମତେ ବ୍ରହ୍ମପୁରରୁ ପୁରୀକୁ ବଦଳୀ କରିଦିଆଗଲା।

କଟକ, ରାଉରକେଲା ଅଫିସରେ ମୋ ଠାରୁ କନିଷ୍ଠଙ୍କୁ ସାମୟିକ ଭାବେ ପଦୋନ୍ନତି ଦିଆ ହୋଇଥିଲେ ମଧ୍, ମତେ ସେଥିରୁ ବଞ୍ଚିତ କରାଯାଇଥିଲା।

**ପୁରୀ - ଘଟଣା ବହୁଳ ସମୟ :**

ବ୍ରହ୍ମପୁରରୁ ପୁରୀ - ଷଷ୍ଠ ଓଡ଼ିଶା ବାଟାଲିଅନ ଏନ୍.ସି.ସି.ରେ ୧୯.୬.୭୧ରେ ଯୋଗ ଦେଲି ଓ ପୁରୀରୁ ଅଜହର ଅଲ୍ଲୀଙ୍କୁ, ୧ମ ଓଡ଼ିଶା ଘୋଡ଼ ସବାର ବାହିନୀକୁ ବଦଳି କରି ଦିଆଗଲା; ଆମେ ଦୁଇଜଣ; ମୁଁ ଓ ଅଲ୍ଲୀଙ୍କ ବିରୁଦ୍ଧରେ କିଛି ଗୁପ୍ତ ମନ୍ତ୍ରଣା କରିଥିଲେ ପ୍ରତିରକ୍ଷା ବାହିନୀର ଅଫିସର; କାରଣ ଅହଂକାରୀ ଓ ଗର୍ବୀ ଅଫିସର ଅନ୍ୟମାନଙ୍କଠାରୁ କେବଳ 'ହଁ ସାର' ଶୁଣିବାକୁ ଚାହାନ୍ତି। ତାଙ୍କୁ ନିୟମ ବା ନୀତି କିଛି ଧାର-ଧାରେ ନାହିଁ, ତାଙ୍କୁ ଯଦି କିଛି ପ୍ରସ୍ତାବ ଦିଆଯାଏ, ତାହେଲେ ଆକ୍ରୋଶର ଶିକାର ହେବା ବାଞ୍ଛନୀୟ। ଯେଉଁଦିନ ମୋର ୬ଷ୍ଠ ଓଡ଼ିଶା ବାଟାଲିଅନ୍‌ରେ ଯୋଗ ଦେବାର ଥିଲା ତା ପୂର୍ବଦିନ ପ୍ରାୟ ୧ଟା ବେଳେ, ପୁରୀରେ ପହଞ୍ଚି ରେଳ ଷ୍ଟେସନରୁ ୧ ମାଇଲ୍ ଭିତରେ NCO ମେସ୍ (Non Commissioned Officer's Mess) ରେ ପହଞ୍ଚିଲି। (ବଟାଲିଅନ ଅଫିସ ହେତୁ ବହୁତ ମିଲିଟରୀ ଅଫିସର ଓ ତାଙ୍କ ତଳିଆ କର୍ମଚାରୀଙ୍କ ପାଇଁ ଉଦ୍ଦିଷ୍ଟ ରହିବା ଓ ଗୋଷ୍ଠୀ ଭୋଜନ ନିମନ୍ତେ ବ୍ୟବସ୍ଥାପିତ ଗୃହ।)

ସେଠାରେ ପ୍ରାୟ ସମସ୍ତେ ଆସି ଉଲ୍ଲସିତ ଖୁସିରେ ହାତ ମିଳାଇ ସ୍ୱାଗତ କଲେ। ବେଶ୍ ହସ ଖୁସିରେ କଟିଗଲା ଦିନଟି। ସେଦିନ ଛୁଟି ଥିବାରୁ ଆଇଁଷ ବ୍ୟବସ୍ଥା ମଧ୍ୟ ଥିଲା। ତେଣୁ ଖାଇ-ପିଇ ସମସ୍ତେ ବିଶ୍ରାମ

ନେବାକୁ ନିଜ ନିଜ ରୁମ୍‌କୁ ଚାଲିଗଲେ। ଜଣେ ସୁବେଦାର ଗୁରଙ୍ଗ (ନେପାଳୀ) ଓ ମୁଁ ଗୋଟିଏ ରୁମ୍‌କୁ ଗଲୁ। ଗୋଟିଏ ଖଟ ଖାଲିଥିଲା କାରଣ ସେ ଖଟ ଯାହା ପାଇଁ ଉଦ୍ଦିଷ୍ଟ ଥିଲା ସେ ମଧ୍ୟ ଜଣେ ଗୁର୍ଖା ସୁବେଦାର, ଯିଏକି ଛୁଟିରେ ତାଙ୍କ ଗ୍ରାମକୁ ଯାଇଥିଲେ, ଯାହାକି ନେପାଳରେ। ସେଦିନ ସନ୍ଧ୍ୟାରେ ବେଶ୍ ମଉଜ ମସ୍ତିରେ କଟିଲା। କାରଣ ଛୁଟି ଦିନ ହେତୁ କିଛି ବିଶେଷ ବ୍ୟବସ୍ଥା କରାଗଲା। ଯାହାକି ପଦାତିକ ବାହିନୀର ବାଟାଲିଅନ୍ ବା ୟୁନିଟ୍‌ରେ ହୁଏ। ଖାଦ୍ୟ ସହିତ ବିଭିନ୍ନ ପ୍ରକାର ମଦଆଣି ମେସ୍ ବୟ ଦେଇ ଯାଉଥାଏ ଓ ସମସ୍ତେ ପିଇବାରେ ମସଗୁଲ ଥାଆନ୍ତି। ମୁଁ ଆଉ ଦୁଇଜଣ ସୁବେଦାର, ବାବୁ ବାବୁ କହି ଜବରଦସ୍ତି ପିଆଉଥାନ୍ତି। ଏମିତି ରାତି ୧୨ ବାଜିଲା- ଆମେ ୩ ଜଣ ଶୋଇବାକୁ ଗଲୁ। ବିଛଣାରେ ପଡ଼ିବା ସଙ୍ଗେ ସଙ୍ଗେ ମୁଁ ଘୋର ନିଦିରେ ଶୋଇଗଲି।

ରାତି ପ୍ରାୟ ପାହି ପାହି ଆସୁଥାଏ, ଭୋର ୪ଟା କି କିଛି କମହେବ, ପାଟି ଶୁଣି ଉଠିଲି, ଭାବିଲି କିଛି ଗୋଟାଏ ଅପ୍ରୀତିକର ପରିସ୍ଥିତି ଉପୁଜିଛି। ଗୁଡ଼ାଏ ପିଇ, କେହି ବୋଧେ ଅସୁସ୍ଥ ହୋଇପଡ଼ିଛି। ମୁଁ ଆସ୍ତେ ଆସ୍ତେ ବାହାରକୁ ଆସି ଦେଖେତ, ଜଣେ କେହି ସୁବେଦାର ପୋଷାକ ପିନ୍ଧି କାନ୍ଦ କାନ୍ଦ ହୋଇ କିଛି କହୁଚି। ଦୁଇଜଣ ଯାକ ସୁବେଦାର ଓ ୩-୪ ଜଣ ହାବିଲଦାର, କିଛି କର୍ପୋରାଲ ମଧ୍ୟ ସେଠାରେ ଗଦା ହୋଇଛନ୍ତି, କାହା ପାଟିରୁ କଥା ବାହାରୁନି, ସମସ୍ତେ ଯେପରି କିଛି ଭୟରେ ସ୍ଥାଣୁ ପାଲଟି ଯାଇଛନ୍ତି।

କିଛି ସମୟ ପରେ ସୁବେଦାର ଗୁରୁଙ୍ଗ ମତେ ବସିବାକୁ କହିଲେ। ସମସ୍ତ ଘଟଣା ଗୋଟି ଗୋଟି କରି କହିଲାବେଳେ ସମସ୍ତେ ପ୍ରାୟ ଭୟଭୀତ ଜଣା ପଡୁଥିଲେ। କାରଣ ଥିଲା ସେଠିକାର ଅଫିସର କମାଣ୍ଡିଂ ସେତେବେଳେ ଅଫିସର କମାଣ୍ଡି ଭାବେ ଜଣେ ମେଜର ୟୁନିଟ୍ କମାଣ୍ଡ କରୁଥିଲେ। ସେ ଅଫିସକୁ ଆସିଲେ ତାଙ୍କ ଲାଞ୍ଜରେ ହାତମାରିବା ମୁସ୍କିଲ ଥିଲା। ଟିକିଏ କଥାରେ ଚାର୍ଯ୍ୟସିଟ୍, ପେଶି, ବୋର୍ଡ ଅଫ୍ ଅଫିସର ଇତ୍ୟାଦି-ଇତ୍ୟାଦି।

କିଛି ଦୋଷ ହେଲେ କୋର୍ଟ ଅଫ୍ ଇନ୍‌କ୍ୱାରୀ ତ ନିଶ୍ଚୟ, ତେବେ ଦଣ୍ଡ ମଧ୍ୟ ଅତିକଠୋର ହେବା ସୁନିଶ୍ଚିତ । ଏକ କଠୋର ମନା ଅଫିସର - ନିଜର ଉପରିସ୍ଥ ଅଫିସରଙ୍କୁ ମଧ୍ୟ ସିଏ ପାସଙ୍ଗରେ ଆଣନ୍ତି ନାହିଁ ।

କିଛି ସମୟ ପରେ ମୁଁ ସବୁକଥା ବୁଝିଗଲି । ଯେ, ସେ ସୁବେଦାର ଜଣକ ୪ଟି ପ୍ରିଜମେଟିକ କମ୍ପାସ ନେଇ ବାଲେଶ୍ୱର ଯାଇଥିଲେ ସଜାଡ଼ିବାକୁ ସେଥିରୁ ଗୋଟଏ ବାଟରେ କେଉଁଠି ହଜେଇ ଦେଇଛନ୍ତି ବା ରେଳରେ ଆସିବା ବେଳେ କେହି ଅନୁମାନ କରି ଚୋରାଇ ନେଇଛି ତେଣୁ - ସେ ଯାହା ହେଉ ଦଣ୍ଡ ଯାହାତ ମିଳିବା କଥା ମିଳିବ, ତେବେ ଏ ଅଫିସର ତାକୁ ଆହୁରି ଅନର୍ଥ କରି ଚାକିରିଟି ନେଲାଭଳି କାର୍ଯ୍ୟକରିବେ ଏଥିରେ ସନ୍ଦେହ ନାହିଁ ।

ମୁଁ ବି ଚିନ୍ତା କଲି, କଣ କଲେ, ଏ ଲୋକ କିଛିଟା ସାନ୍ତ୍ୱନା ପାଇବ । ମଦର କରାମତି ମଧ୍ୟ କିଛି କମ ନଥାଏ । ତେଣ ତାଙ୍କୁ କହିଲି, ବ୍ୟସ୍ତ ହେବାର କିଛି ନାହିଁ, ମୁଁ ସବୁ ଠିକ୍ କରିଦେବି । ତେବେ ମୁଁ ଯାହା କହୁଛି, ସେମିତି କର ।

୧. ସୁବେଦାର ସାହେବ (ଆର୍ମିରେ ସାହେବଟା ପ୍ରାୟ ଭଦ୍ରାମି ଦୃଷ୍ଟିରୁ ସମସ୍ତଙ୍କୁ କୁହାଯାଏ) ପ୍ରଥମେ ପୁଣି ଟ୍ରେନ ଧରି ବାଲେଶ୍ୱର ଷ୍ଟେସନରେ ପହଞ୍ଚନ୍ତୁ । ବାଲେଶ୍ୱର ଜି ଆର ପି ଓ ଖୋର୍ଦ୍ଧା ଜିରାପିରେ କମ୍ପାସଟିକୁ ମୁଣ୍ଡ ତଳେ ରଖିଥିବା ଗୋଟିଏ ପକେଟରୁ କେହି ନେଇଯାଇଛି; କିମ୍ୱା କେଉଁଠି ହଜି ଯାଇଥିବା ଉଲ୍ଲେଖ କରି ଏଫ୍.ଆଇ.ଆର୍ ଦେଇ ଆସି, ପୁରୀରେ ଗୋଟିଏ ଏଫ୍.ଆଇ.ଆର୍ ଜି ଆର ପି ଅଫିସ୍‌ରେ ଦେଇ ଆସନ୍ତୁ । ବାଲେଶ୍ୱର ଅଫିସକୁ ଯାଇ ମୁଭମେଣ୍ଟ ଅର୍ଡର ତାରିଖ ମଧ୍ୟ ବଦଳାଇ ଆସିବାକୁ କହି, ତାଙ୍କୁ ସେହି ସକାଳ ସୁଦ୍ଧା ବାଲେଶ୍ୱର ଅଭିମୁଖେ ପଠାଇ ଦେଲୁ ।

ସେ ଦିନ ଠିକ୍ ୧୦ଟାରେ ମୁଁ ଅଫିସରେ ପହଞ୍ଚି ମୋର ଯଏନିଂ ରିପୋର୍ଟ ଦାଖଲ କଲି । ମେଜର ଥୋମାସଙ୍କ ସହିତ ସାକ୍ଷାତ ବି ହେଲା,

ହେଲେ ଜଣା ପଡୁଥିଲା ସେ ଅତ୍ୟନ୍ତ ରାଗୀ ଓ କଥାବାର୍ତ୍ତାରେ ଢଙ୍ଗ ମଧ୍ୟ କିଛି ଅଲଗା । ଅଫିସକୁ ଆସିଲେ ସତେଯେପରି ସେ ଭଗବାନଙ୍କର ଦ୍ୱିତୀୟ ରୂପ ।

ଯିଏ ଯାହା କହୁପଛେ, ଚାକିରି ଖଣ୍ଡେ ତ କରିଛୁ, ତେଣୁ ସହିବାକୁ ପଡ଼ିବ । ଏମିତି ୨ ଦିନ ଗଲା । ମୁଁ ଯେପରି କହିଥିଲି ଠିକ୍ ସେପରି କାମ କରି, ବାଲେଶ୍ୱର ଯାଇଥିବା ସୁବେଦାର ମଧ୍ୟ ଆସି ପହଞ୍ଚି ଗଲେ । ଅଫିସର ବାତାବରଣ ବଦଳି ଗଲା ସେଇଦିନ ଆଉଜଣେ ବିହାରୀ ଆଦିବାସୀ ଆସି ପହଞ୍ଚିଲେ ତାଙ୍କର ଏଠାରେ ପହଞ୍ଚିଲା ଦିନ ହିଁ, ସେ ସୁବେଦାର ମେଜରର ତାଜ ପିନ୍ଧିବେ; ପ୍ରତିରକ୍ଷାବାହିନୀର ନିୟମ ଅନୁସାରେ ତାଙ୍କୁ ଅଫିସର କମାଣ୍ଡି ତାଙ୍କ କାନ୍ଧରେ ତାରାଚିହ୍ନ କାଢ଼ି, ତାଜ ବା ଅଶୋକ ସ୍ତମ୍ଭର ଚିହ୍ନ ତଳେ ନାଲି ଫିତା, ପିନ୍ଧାଇଲେ ଯେଉଁମାନଙ୍କୁ ନନ୍ କମିସନ୍ଡ ଅଫିସର ଭାବେ ଗଣନା କରାଯାଏ । (ସୁବେଦାରମାନଙ୍କର ତାରା; ଗୋଟିଏ ତାରା ଥିଲେ ନାଏବ ସୁବେଦାର - ୨ଟି ତାରା ସୁବେଦାର ଓ ଅଶୋକ ସ୍ତମ୍ଭ ଥିଲେ ସୁବେଦାର ମେଜର ବୋଲି ଚିହ୍ନିବାକୁ ହୁଏ ।)

ସୁବେଦାର ମେଜରଙ୍କ ପଦୋନ୍ନତି ଉତ୍ସବ ନିରାଡ଼ମ୍ବର ଭାବରେ ପାଳନ କରାଗଲା ଏବଂ ତାଙ୍କ ନିର୍ଦ୍ଦେଶ ଦିଆଗଲା ଯେ ଆସନ୍ତା କାଲି ୧୧ଟା ବେଳେ, ସୁବେଦାରଙ୍କର ପେଶୀ ହେବ (ଯିଏକି କମ୍ପାସ ପ୍ରିଜ୍‌ମାଟିକ ହଜାଇ ଥିଲେ) । କିନ୍ତୁ ଦୁଃଖର କଥା ଯେ ସେ ଅଫିସର; କିରାଣୀ କି ଅନ୍ୟକେହି ସେ ନିୟମ ବିଷୟରେ ଅଜ୍ଞ ଥିଲେ ଯେ; ଜଣେ ସୁବେଦାରଙ୍କୁ ପେଶୀ କରିବାକୁ ହେଲେ, ତାଙ୍କର ବେଲ୍‌ଟ ଓ ଟୋପି ବାହାର କରିବାକୁ ପଡ଼ିବ, ଏଥିପାଇଁ ଜଣେ ଅଫିସର କର୍ଣ୍ଣେଲ ରେଙ୍କର ହେବା ଆବଶ୍ୟକ ଓ ତାଙ୍କୁ ପେଶୀ କରିବା ଅଫିସର ଜଣେ ସୁବେଦାର ମେଜର ହେବା ଆବଶ୍ୟକ । ଆଜିର ତାଜ ପିନ୍ଧିଥିବା ସୁବେଦାର ମେଜର, ୨୧ ଦିନ ପରେ ହିଁ ତାଙ୍କର କନଫର୍ମ ବା ସମ୍ମତ ହେଲା ବୋଲି ଧରାହେବ । ତେଣୁ ସିଏ ଜଣେ ସୁବେଦାରଙ୍କୁ ପେରେଡ କରି ଅଫିସରଙ୍କ ସାମ୍ନାକୁ ନେଇ ପରିବାର ଅନୁମତି ନାହିଁ । ତେଣୁ ଏ ମଧ୍ୟ ବିଚାରକୁ ନେବାକୁ ମୁଁ ରୋକଠକ ମନାକଲି । ଅଫିସ

ଅର୍ଡରଗୁଡ଼ିକୁ ନୋଟ କରି ସୁବେଦାର ମେଜରଙ୍କ ଦୃଷ୍ଟି ଆକର୍ଷଣ କଲି ଏବଂ ସେ ଯଦି ଅଫିସରର ହୁକୁମ ମାନି ଏ କାର୍ଯ୍ୟ କରନ୍ତି, ଭବିଷ୍ୟତରେ ନିଜେ ବି ଖାଲରେ ପଡ଼ିବା ସଙ୍ଗେ ସଙ୍ଗେ ପିନ୍ଧିଥିବା ତାଜଟି ଓହ୍ଲାଇବାକୁ ବାଧ୍ୟ ହେବେ।

ଏ ସବୁ କହିବା ଓ ନିୟମ ଦେଖେଇବା ପରେ ସବୁକିଛି ବନ୍ଦ ହୋଇଗଲା ଏବଂ ଶରବ୍ୟ ହେଲି ମୁଁ, କାରଣ କେହି ଏ ବିଷୟରେ ଜାଣି ନଥିଲେ ଏବଂ ଏ ଦଣ୍ଡବିଧି ସହଜରେ କାର୍ଯ୍ୟକାରୀ ହୋଇଯାଇଥାନ୍ତା। ପର କଥା ପଚାରେ କିଏ ?

ସେ ଅଫିସରେ ଜଣେ କମାଣ୍ଡି ଅଫିସର ଓ ଅନ୍ୟ ଜଣେ ଏଡ୍‌ମିନିସ୍‌ଟ୍ରେଟିଭ ଅଫିସର ବା ପ୍ରଶାସନିକ ଅଫିସର ନିଯୁକ୍ତି ପାଇଥାନ୍ତି। ତେଣୁ ସେଠାରେ ମୋତେ ଅଣ ନିଶ୍ୱାସୀ ହେବାକୁ ପଡ଼ିଲା। ଯେତେ ନିଠେଇ କାମ କଲେ ମଧ୍ୟ ମିଛଟାରେ କିଛି ନା କିଛି ଆଳ ଦେଖାଇ ମୋ ଉପରେ ରାଗ ସୁଝାଇବା ପାଇଁ ସତେଯେପରି ମନସ୍ଥ କରିନେଲେ ଦୁଇ ଅଫିସର।

ସମୟ କେତେବେଳେ କାହାକୁ କୁଆଡ଼େ ଟାଣିନିଏ ତା ଏ ମଣିଷ ବୁଝିବା କଷ୍ଟକର। ସେ ଅଫିସରେ ୨ ଜଣେ ସ୍ୱିପର କାର୍ଯ୍ୟ କରୁଥିଲେ। ସେମାନଙ୍କ ମଧ୍ୟରୁ ଜଣେ ଯୁବକ ଓ ସେ ଡ୍ରାଇଭିଂ ମଧ୍ୟ ଜାଣିଥିଲେ, ତେଣୁ ମୁଁ ଓ ଏଡମିନିସ୍‌ଟ୍ରେଟିଭ ଅଫିସର ବେଳେବେଳେ ଭୁବନେଶ୍ୱର ସେଇ ଡ୍ରାଇଭରଙ୍କୁ ନେଇ ଆସୁ। ସେଠି ଡ୍ରାଇଭର କେହି ନିଯୁକ୍ତି ନ ପାଇଥିବାରୁ ମୁଁ ଏକଥା ଉଚ୍ଚଶିକ୍ଷା ବିଭାଗର ଡେପୁଟି ଡାଇରେକ୍ଟରଙ୍କ କାନରେ ପକାଇଥିଲି। ଏବଂ ସେ କହିଥିଲେ, ତାଙ୍କର ଦରଖାସ୍ତ ପଠାଅ ବୁଝିବା। ମୁଁ ସମୟ ଖୋଜୁଥିଲି, ଏ ପରି ସମୟରେ କମାଣ୍ଡିଂ ଅଫିସର ତାଙ୍କର ବାର୍ଷିକ ହେଲ୍‌ଥ୍ ଚେକ୍ ପାଇଁ ବମ୍ବେ ଓ ଏଡମ୍ ଅଫିସର ଛୁଟିରେ ଚାଲିଗଲେ ଓ ଜଣେ ପାର୍ଟ ଟାଇମ୍ ଅଫିସର, ଯିଏକି ଏସ୍.ସି.ବି. କଲେଜ୍, ପୁରୀରେ ପ୍ରଫେସର ଥିଲେ ଓ ଏନ୍.ସି.ସି.ର Coy. Commander ଥିଲେ। ସେ ଆସି ଚାର୍ଯରେ ରହିଲେ, ଏହି ସୁବିଧା ଦେଖି ମୁଁ, ସେ ସ୍ୱିପରଙ୍କୁ ଡ୍ରାଇଭର ପୋଷ୍ଟ ପାଇଁ, ଆବେଦନ ପଠାଇ ଦେଲି ଓ ତା'ର ଅଳ୍ପଦିନ ଭିତରେ,

ତାଙ୍କର ଡ୍ରାଇଭର ପୋଷ୍ଟିଂ ହୋଇଗଲା । ଏଥିଲା ପୁରୀ ଅଫିସର ୨ୟ ଘଟଣା । ସେତେବେଳେ ଡି. କେ. ନନ୍ଦ କି ପି.ସି. ଶତପଥୀ ପୁରୀ କଲେଜରେ ଏନ୍.ସି.ସି. ଆଫିସରେ କାର୍ଯ୍ୟରତ ଥିଲେ ଠିକ୍ ମନେ ପଡୁନାହିଁ ।

ପ୍ରଥମ ଘଟଣାଟିର ଖୋଳତାଡ଼ ଚାଲିଥିଲା । ନିୟମ କାନୁନ ପାଇଁ ଦିଲ୍ଲୀ ଅଫିସକୁ ଚିଠି ଲେଖା ହୋଇଥିଲା; ଅଫିସର (କର୍ଣ୍ଣଲ) ଜଣକୁ ପଠାଇ କୋର୍ଟ ଅଫ୍ ଇନ୍‌କ୍ୱାରୀ କରିବାକୁ । ଏ ସମୟରେ ମୋର ବି ଚିନ୍ତା ବଢ଼ିଯାଇଥିଲା, କାରଣ ମୁଁ ଯୋର ଦେଇ କହିଦେଇଥିଲି ଯେ ମୁଁ ଥିଲା ଭିତରେ ତୁମର ସର୍ଭିସ ବୁକ୍ ବା ତୁମ ର୍ୟାଙ୍କ ଉପରେ କେହି ଦାଗ ଲଗାଇ ପାରିବେନି । ତେଣୁ ମୁଁ ବି ଚିନ୍ତାରେ ବସିଥିଲି - କ'ଣ କରିବି - କିପରି ହେବ ଏହାର ସମାଧାନ ।

ଦିନେ ସନ୍ଧ୍ୟାବେଳେ ଜଣେ ସିପାହୀ ର୍ୟାଙ୍କର ବଙ୍ଗାଳୀ ଜୱାନ, ଛୁଟି ଯିବା ପାଇଁ ସ୍ଥିର କରି ମତେ ଅନୁରୋଧ କଲା ତାଙ୍କୁ ୭ ଦିନ କାଜୁଆଲ୍ ଛୁଟି ଦରଖାସ୍ତ ଲେଖି ପୁଟଅପ କରିବାକୁ । (ଗ୍ରାଣ୍ଟ ବା ମଞ୍ଜୁର କରିବା- ଅଫିସରଙ୍କର ଅନୁମତି ନିମନ୍ତେ ଫାଇଲ୍ ପଠାଇବାକୁ ।) ମୁଁ ମଧ କାହିଁକି କେଜାଣି କଥାଟାକୁ ଟିକିଏ ଗୁରୁତ୍ୱ ମନେକଲି । କାରଣ ମୋର କଥା ରକ୍ଷା କରିବାକୁ, କଲିକତା ହିଁ ଏକ ବିକଳ୍ପ ଥିଲା ।

ବ୍ରହ୍ମପୁରରେ ଥିବାବେଳେ, ତିନିମାସ ଧରି ଯେଉଁ ଗୃହ ବନ୍ଦୀରେ ରହିଲି, ସେତେବେଳେ ବହୁ ବଙ୍ଗାଳୀ ମିଲିଟାରୀ ଲୋକଙ୍କ ସଙ୍ଗରେ ଆସିଥିଲି ଓ କଲିକତା ସହର ବିଷୟରେ ମଧ କିଛି ଜାଣିବାକୁ ପାଇଥିଲି । ତେଣୁ ଏ ସିପାହୀ ପାହ୍ୟାର ସୈନିକଙ୍କ ଫାଇଲ୍ ପଠାଇବା ସଙ୍ଗେ, କମ୍ପାସ ହଜାଇ ଥିବା ସୁବେଦାରଙ୍କୁ କହି, ତାଙ୍କୁ ଚୋରା ମାର୍କେଟରୁ ଯେକୌଣସି ମତେ ଗୋଟିଏ କମ୍ପାସ ଆଣିବାକୁ ପଇସା ଦେବାକୁ କହିଲି :

ସେ ସିପାହୀ ଜଣକ ଅତି ବିଶ୍ୱସ୍ତ ଭାବେ, ଟଙ୍କା ୫୦ଟା ଦେଇ ଗୋଟିଏ ପୁରୁଣା ପ୍ରିଜମେଟିକ କମ୍ପାସ ଆଣିବାରେ ସକ୍ଷମ ହୋଇଥିଲେ

ଏବଂ ତା' ନମ୍ବରଟିକୁ ଠିକ୍ କରିବାକୁ ପୁଣି ବାଲେଶ୍ୱର ଯାଇ, ଠିକ୍ କରାଯାଇଥିଲା ଖୋଦେଇ କରି ନିଖୁଣ ଭାବେ ସମସ୍ତ କାର୍ଯ୍ୟ ଠିକ୍ ରୂପେ କରିପାରି ଥିବାରୁ ସମସ୍ତ ସିପାହୀ ଠାରୁ ସୁବେଦାର ମେଜର ପର୍ଯ୍ୟନ୍ତ ମତେ ତାଙ୍କ ମୁଣ୍ଡରେ ବସାଇଥିଲେ । ଛୁଟି ଦିନମାନଙ୍କରେ ମୋର ପ୍ରାୟ ମେସରେ କଟୁଥିଲା । ଏମିତି ଭାବେ ୨-୩ ବର୍ଷ ବିତିଗଲା, ହେଲେ ସମସ୍ତ କିରାଣିଙ୍କର ଚକ୍ଷୁଶୂଳ ହୋଇ ରହିଗଲି ମୁଁ । ସେ ଅଫିସରେ ଜଣେ ବେହେରା ଓ ଜଣେ ମଜୁମଦାର ବୋଲି କିରାଣୀ ଥିଲେ ଏମାନଙ୍କ ଭିତରୁ ମଜୁମଦାର ଟିକିଏ ମୋ ସପର୍ଟରେ - ଯଦିଚ ଖୋଲା ଖୋଲି ଭାବେ ନୁହଁ । ଆଉ ୪ ଜଣଙ୍କର ନାଁ ଆଜିର ଦିନରେ ମନେ ନାହିଁ ।

ପୁରୀ ଅଫିସରେ ଆଉ ଗୋଟିଏ ଅପ୍ରୀତିକର ଘଟଣା ଘଟିଥିଲା । କାର୍ଯ୍ୟ ବ୍ୟସ୍ତ ସମୟରେ ଯଦି କେହି ମଝିରେ କଥାବାର୍ତ୍ତା ହୋଇ କାର୍ଯ୍ୟରେ ବିଘ୍ନ ଘଟାନ୍ତି ତେବେ ମଣିଷ ରାଗିବ ହିଁ ରାଗିବ; ଜଣେ ହେମନ୍ତ ମହାନ୍ତି, ଉଚ୍ଚତର କିରାଣି କୌଣସି ଏକ ଇଂରାଜୀ ଶବ୍ଦର ବ୍ୟବହାର ପାଇଁ ଅନ୍ୟମାନଙ୍କୁ ପଚାରୁ ଥିବାରୁ ମୁଁ କଣ ଗୋଟାଏ ହ୍ୟୁ ଗୁଁ୍ୟ ଚାଲିଛିମ କହି ସେ ଶବ୍ଦର ଅର୍ଥଟିକୁ ବ୍ୟବହାର କରିବାର ଉପଯୁକ୍ତ ବାକ୍ୟ ବି କହିଦେଲି; ତା ତ ହେଲା, ତେବେ କଥା ରହିଲା "ଗୁଁ୍ୟ" ପାଖରେ ।

ଏହାକୁ ଗୋଟିଏ ବିଷୟ କରି, ପ୍ରାୟ ୭ ଜଣ କିରାଣୀ ଦସ୍ତଖତ କରି ମୁଁ ଅସଭ୍ୟ ଶବ୍ଦ କହି, ସେମାନଙ୍କୁ ତାଚ୍ଛଲ୍ୟ କରିଛି ବୋଲି, ମୋ ବିରୁଦ୍ଧରେ ଅଫିସରଙ୍କୁ ଲିଖିତ ପୂର୍ବକ ନିବେଦନ କଲେକି, ସତେ ଯେପରି ଦଣ୍ଡିତ କରାଯିବ । ଅଫିସର ମଧ୍ୟ ଏକ ବିସ୍ତୃତ କାରଣ ଦର୍ଶାଇ ବିଜ୍ଞପ୍ତି (Notice) ଜାରି କଲେ । ମୁଁ ମଧ୍ୟ ଟିକିଏ ବିଚଳିତ ହୋଇଗଲି ଏହାର କି ଉତ୍ତର ଦେବି ବୋଲି ।

ତା' ପରଦିନ ଥିଲା ବାହୁଡ଼ା ଯାତ୍ରା, ତିନି ଦିନ ସମୟ ମିଳିଥିଲା ତାର ଉତ୍ତର ଦେବା ପାଇଁ । ବାହୁଡ଼ା ଯାତ୍ରା ଦେଖିବାକୁ ମୋର ଦାଦି

ଶ୍ୱଶୁରଙ୍କ ପୁଅ ରଜନୀ ଆସି ପହଞ୍ଚିଥିଲା। ଦୁଇଜଣ ଯାକ ମିଶି ଗୋଟାଏ ଇଂରାଜୀ ଶବ୍ଦକୋଷ ଅଭିଧାନ (Dictionary) କିଣି ଖୋଜିଲୁ ତାର ବନାନ ଓ ଅର୍ଥ ଯାହାହେଉ - ସେହିଭଳି ଏକ ଉଚ୍ଚାରିତ ଶବ୍ଦ ବାହାର କଲୁ ଯାହାର ଅର୍ଥ ବୋକା ଥିଲା ଭଳି ମନେହୁଏ ଏବଂ ତାକୁ ପାଇ, ଅଫିସରଙ୍କୁ ଏଭଳି ଅର୍ଥ ନବୁଝି କାରଣ ଦର୍ଶାଇବା ପାଇଁ ନିର୍ଦ୍ଦେଶ ଦେଇଥିବା ଲଜ୍ଜାକର ବିଷୟ ଲେଖି, ସେଇମାନଙ୍କ ଉପରକୁ ଓଲଟା ପ୍ରଶ୍ନ ପଚାରି ସେଥିରୁ ମୁକ୍ତ ହୋଇଥିଲି।

ତେବେ ପ୍ରଥମ ମାମଲାଟି ଗୁମୁରି ଗୁମୁରି ରହିଥିଲା। ମେଜର ଥୋମାସ ଆସିବା କ୍ଷଣି (ଛୁଟିରୁ) ପୁଣି ଉଠିଲା ସେହି ବିଷୟ। ତେଣୁ ତାକୁ ଆଗରୁ ରଫା-ଦଫା କରିବାର ବ୍ୟବସ୍ଥା ମୁଁ କରିସାରିଥିଲି.. ଶତପଥୀବାବୁ (କଲେଜର ପ୍ରଫେସର) କାର୍ଯ୍ୟଭାର ସମ୍ଭାଳି ଥିବାବେଳେ। ସେଠାର ଜଣେ ରେଲୱେ ୪ର୍ଥ ଶ୍ରେଣୀ କର୍ମଚାରୀଙ୍କୁ ଧରି ଗୋଟାଏ ବୁଦାମୂଳରୁ ସେଇ କମ୍ପାସଟି ମିଳିଲା ବୋଲି ଜି.ଆର.ପି ଥାନାରେ ଦାଖଲ କରିବାକୁ ଦିଆଗଲା ଓ ସେ ମଧ୍ୟ ଠିକ୍ ସେୟା କଲେ। ତେଣୁ ଦୁଇଦିନ ପରେ। ପୂର୍ବରୁ ଏଫ୍.ଆଇ.ଆର୍. ସଂଯୋଗ କରି, ଜି.ଆର.ପି ଥାନାରୁ, ସେଇ ପ୍ରିଜମେଣ୍ଟିକ କମ୍ପାସ ମିଳିଛି ଓ ତାକୁ ନେଇଯିବାକୁ ଚିଠି ଅଫିସରେ ପହଞ୍ଚିଲା ଓ ତାକୁ ଯାଇ ଅଫିସର ଛୁଟିରୁ ଆସିବା ପୂର୍ବରୁ, ତାହା ଯଥା ସ୍ଥାନରେ ରଖାଯାଇଥିଲା ଏବଂ କମାଣ୍ଡି ଅଫିସରଙ୍କ ଆସିବା ପୂର୍ବରୁ ତା କାମ ସରିଯାଇଥିଲା। କିନ୍ତୁ କମ୍ପାସ ହଜାଇଥିବା ସୁବେଦାରଙ୍କ A.C.R. (ଏନୁଏଲ୍ କନଫିଡ଼େଣ୍ଟେନ୍‌ସିଆଲ୍ ରିପୋର୍ଟ)କୁ ଏପରି ଲେଖାଯାଇଥିଲା ଯାହାକି, କୌଣସି ମତେ ତାଙ୍କର ପ୍ରମୋଶନ ବା ଉନ୍ନିତୀ ହେବା ସମ୍ଭବ ହେବନାହିଁ। ତେଣୁ ସମସ୍ତେ ଏକ ପ୍ରକାର ଶଙ୍କାକୂଳ ସମୟ ଅତିବାହିତ କରୁଥିଲେ, ଯାହାକି ଅଫିସ ଅର୍ଡର ହେଲାପରେ, ତାକୁ ତାଙ୍କ ସର୍ଭିସ ବୁକ୍‌ରେ ଲିପିବଦ୍ଧ କରିବା କଥା। କିନ୍ତୁ ସେଗୁଡ଼ିକ ଲିପିବଦ୍ଧ କରିବା ସପକ୍ଷରେ ମୁଁ ନଥାଏ। ତେଣୁ ସୁବିଧା ଦେଖି ସେଗୁଡ଼ିକୁ ଅଫିସ୍ ଫାଇଲ୍‌ରୁ  କାଢ଼ିଦେବା ପାଇଁ ମୁଁ ଏକ ପ୍ରକାର ପ୍ରସ୍ତୁତ ହୋଇ ରହିଥିଲି।

ଶେଷରେ ତାଙ୍କ (ମେଜର ଥୋମାସ) ବାର୍ଷିକ ସ୍ୱାସ୍ଥ୍ୟ ପରୀକ୍ଷା ପାଇଁ ବମ୍ବେ ଯିବାକୁ ଖବର ଆସିଲା । ସେ ଯିବା ପୂର୍ବରୁ ଗୋର୍ଖା ଜେ.ସି.ଓ ମାନଙ୍କ ଭିତରୁ ଜଣେ ବମ୍ବେ ଯାଇ ସେଠାରେ ଥିବା ଜଣେ ଗୋର୍ଖା ଡାକ୍ତରଙ୍କ ସାହାଯ୍ୟ ନେଲେ ଓ ଏ ମେଜର ସାହେବଙ୍କ ଗୁଣ ଗରିମା ସବୁ ବଖାଣି ତାଙ୍କୁ କିଛି ଟଙ୍କା ଦେଇ ଫେରିଲେ ।

ସେ ଫେରିଲେ, ଏ ଅଫିସର ମଧ୍ୟ ତାଙ୍କ ପଛେ ପଛେ ବମ୍ବେରେ ପହଁଞ୍ଚିଲେ । ଡାକ୍ତର ତାଙ୍କୁ ୩ ମାସ ରଖି କରି ଫେରାଇଲେ । କିନ୍ତୁ କ'ଣ ହେଲା କେଜାଣି ପୁଣି ୬ ମାସ ପରେ ତାଙ୍କୁ ପୁଣି ହସପିଟାଲ୍ ଯାଇ ବମ୍ବେର ଏକ ବୁଢ଼ା ଜାହାଜ; ସିପ ହସପିଟାଲ୍‌ରେ ଭର୍ତ୍ତି କରିଥିଲେ, ଯାହାକି ସମୁଦ୍ର ଭିତରେ ହିଁ ତାଙ୍କର ଚିକିତ୍ସା ଆରମ୍ଭ ହେଲା ଓ ୩-୪ ମାସ ପରେ ଖବର ଆସିଲା, ସେ ଆଉ ଇହଧାମରେ ନାହାନ୍ତି । ତାପରେ କ'ଣ ହେଲା କେଜାଣି, ଶବକୁ ତାଙ୍କ ଗ୍ରାମକୁ ପଠାଇ ଦିଆଗଲା ଓ ତାଙ୍କ ପିଲାଛୁଆଙ୍କୁ ମଧ୍ୟ ପୁରୀରୁ ତାଙ୍କ ଗ୍ରାମକୁ ପଠାଇ ଦିଆଯାଇଥିଲା ।

ପୁରୀରେ ଥିଲାବେଳେ ମୋର ବଡ଼ପୁଅର ବର୍ଷପୁରାଣି କରାଯାଇଥିଲା, ଯେଉଁଥିରେ କି ପୁରୀରେ ଥିବା ସବୁ ବନ୍ଧୁବାନ୍ଧବ ଆସି ଏହି ସୁନ୍ଦର ପୂଜାକର୍ମରେ ଭାଗ ନେଇଥିଲେ ଏବଂ ତାର ବେଶ କିଛିଦିନ ପରେ- କୋଣାର୍କ ମେଳା ବା ଚନ୍ଦ୍ରଭାଗା ବୁଡ଼ ପଡ଼ିଲା । ଯେଉଁଦିନ ମୋର ଏକମାତ୍ର ଶାଳୀକୁ ଧରି ମୁଁ ବୁଡ଼ ବା ମେଳା ଦେଖିବାକୁ ଗଲି କାରଣ ମୋ ସ୍ତ୍ରୀ ମଧ୍ୟ ସେଇ ସମୟରେ ତାଙ୍କ ଗ୍ରାମକୁ ଚାଲିଯାଇଥିଲେ, ଏ ସୁଯୋଗ ପାଇ, ମୋ ବସାଘରୁ ସମସ୍ତ ଜିନିଷ ଚୋରି ହୋଇଯାଇଥିଲା । କେବଳ ଗୋଟିଏ ପେଟ୍ରୋମାକ୍ସ ଛଡ଼ା ଆଉ କିଛି ଘରେ ନଥିଲା । ପୋଲିସ୍ ଆସି ମୁଁ ଥିବା, ମାଉସୀ ମାଁ ମନ୍ଦିର ନିକଟସ୍ଥ ଏକ କାଦୁଆ; ଅମରି ବଣରୁ ଗୋଟିଏ ଭଙ୍ଗା ଟ୍ରଙ୍କ ଠାବ କରିଥିଲା, ସେଥିରୁ କେବଳ ଗୋଟିଏ ରୂପା ଗିନା (ଚନ୍ଦନ ଗିନା) ହିଁ ମିଳିଥିଲା ।

ଏ ଭିତରେ ସମୟ-ସମୟରେ ମୁଁ ମୋର ଉପରିସ୍ଥ ଅଫିସ (ଡି.ପି.ଆଇ)କୁ ଘନ ଘନ ଚିଠି ଦେଉଥିଲି ମୋର ପ୍ରମୋଶନ ପାଇଁ,

କାରଣ ଜାଣିବାକୁ ପାଇଥିଲି ଯେ ମୋ ଠାରୁ ଜୁନିଅରମାନେ ଦୀର୍ଘ ଦିନ ହେଲା ଅଫିସିଏଟିଂ ପ୍ରମୋଶନ ପାଇଁ ବେଶ୍ ଆରାମରେ କାଳଯାପନ କରୁଛନ୍ତି। ତେଣୁ ଡି.ପି.ଆଇ, ଯେଉଁ ଅଫିସରେ ସେଇ ଜୁନିଅରମାନେ କାର୍ଯ୍ୟ କରୁଥିଲେ ତାଙ୍କୁ ସେଇ ଯାଗାରେ ଷ୍ଟାୟିତ୍ୱ କରି ମତେ ସମ୍ବଲପୁରର ୫ମ ଓଡ଼ିଶା ଏନ୍.ସି.ସି. ବଟାଲିଅନ୍‌କୁ ବଦଳି କରିଦେଲେ। ଓ ମୁଁ ପୁରୀରୁ ଯାଇ ଜୁନ୍ ଶେଷ ସପ୍ତାହର ସମ୍ବଲପୁରର ୫ମ ଓଡ଼ିଶା ଏନ୍.ସି.ସି. ବଟାଲିଅନରେ ଜଏନ୍ ବା ଯୋଗ ଦେଲି।

**୫ମ ଓଡ଼ିଶା ବଟାଲିଅନ୍ :**

ସେ ସମୟରେ ସମ୍ବଲପୁର ଯିବା ସହଜ ନଥିଲା। କଟକ ଓ ଭୁବନେଶ୍ୱରରୁ ୨ଟା ନାଇଟ୍ (ରାତ୍ରି) କୋଚ ଯାଉଥିଲା। ତା ମଧ୍ୟ ବେଳେବେଳେ ଏପରି ଅବସ୍ଥା ସୃଷ୍ଟି ହେଉଥିଲା, ଯେଉଁଥିରେ କି ୭ ଦିନ ଆଗରୁ ମଧ୍ୟ ଟିକଟ ମିଳୁନଥିଲା। ସେ ଯାହାହେଉ ଠିକ୍ ସମୟରେ ଯାଇ ସମ୍ବଲପୁରରେ ପଂହଞ୍ଚି ଅଫିସ୍‌ରେ ଯୋଗ ଦେଲି କିନ୍ତୁ ରହିବା ପାଇଁ କୌଣସି ସୁବିଧା ନଥିଲା। ସାଙ୍ଗେ ସାଙ୍ଗେ ଘର ମିଳିବା ମଧ୍ୟ କଷ୍ଟ ସାଧ୍ୟ ଥିଲା, ତେବେ ଜଣେ ମଉସା ଶ୍ୱଶୁରଙ୍କ ପୁଅର ସାଙ୍ଗ ଯିଏକି ବୃକ୍ସହିଲରେ ଥିବା ଗୋଟିଏ ପି.ଏଚ୍.ଡି ଅଫିସର ଗୋଟିଏ ଷ୍ଟୋର ରୁମ୍‌ରେ ରହୁଥିଲେ ତାଙ୍କ ପାଖରେ ସାଙ୍ଗ ହୋଇ ରହିଲି। କିଛିଦିନ ପରେ ଛୁଆ-ପିଲାଙ୍କୁ ନେଇ ମୁଦିପଡ଼ାର ଗୋଟାଏ ଦୋତାଲାରେ ଭଡ଼ା ନେଇ ରହିଲୁ।

ମୁଁ ୫ମ ଓଡ଼ିଶା ବଟାଲିଅନ୍‌ରେ ଜଏନ୍ କରିବା ପୂର୍ବରୁ, ସେଠାରେ କମାଣ୍ଡିଂ ଅଫିସର ଭାବେ କାର୍ଯ୍ୟ କରୁଥିବା ଅଫିସରଙ୍କ ବଦଳି ହୋଇଯାଇ ଥିଲା। ମୋର ଯେତେଦୂର ମନେ ଅଛି, ଜଣେ ମେଜରଙ୍କ ବଦଳି ପରେ, ଜଣେ ଲେଫ୍‌ଟନାଣ୍ଟ କର୍ଣ୍ଣଲ ୫ ଓଡ଼ିଶାରେ ଜଏନ୍ କଲେ। ମୋର ପ୍ରାୟ ୩/୪ ମାସ ପରେ ପିଲାମାନଙ୍କୁ ନେବା ପାଇଁ ପ୍ରାୟ ୧୫ ଦିନ ଆଗରୁ ଛୁଟି ଦରଖାସ୍ତ ଦେଇଥିଲି। କିନ୍ତୁ ବସ୍ ଟିକଟ ମିଳିବା ସହଜ ନଥିଲା - ତେଣୁ

ଲାଇନ୍‌ରେ ଇଟା ରଖି ୩-୪ଦିନ ଆଗରୁ ଦଉଡ଼ିବାକୁ ପଡୁଥିଲା ବସଷ୍ଟାଣ୍ଡ । ତେବେ ଶନିବାର - ରବିବାରକୁ ମିଶାଇ ମୁଁ ୭ ଦିନ ଛୁଟି ନେଇ ଆସି ପିଲାମାନଙ୍କୁ ନେଇ ଠିକ୍ ସମୟରେ ସମ୍ବଲପୁରରେ ପହଞ୍ଚିଲି ଓ ପ୍ରତିଦିନ ଭଳି ଦିନଗୁଡ଼ିକ ବିତିବାକୁ ଲାଗିଲା ।

୨ ମାସ ଆଗର ଘଟଣା, ଶାସନରେ ଗୋଟାଏ ପ୍ରଶିକ୍ଷଣ ଶିବିର ପଡ଼ିବାର ଆୟୋଜନ ହୋଇଥିଲା । ସାଧାରଣରେ ସବୁ ଖାଉଟି ଜିନିଷ ମିଳିବା କଷ୍ଟକର । ସବୁ କଂଟ୍ରୋଲ୍ । ତେଣୁ କଲେକ୍ଟର ଅଫିସକୁ ଦଉଡ଼ି-ଦଉଡ଼ି ଚାଉଳ, ଚିନି, ଅମୁଲ, ଅଟା ଇତ୍ୟାଦି ୫୦୦ ଜଣଙ୍କ ପାଇଁ ବୋଧେ ସବୁ ଯୋଗାଡ଼ କରିଥିଲି । ଏନ୍.ସି.ସି. କ୍ୟାମ୍ପ ୨ ଦିନ ପୂର୍ବରୁ, ରାଜ୍ୟ କର୍ମଚାରୀ ଓ ମିଲିଟାରୀ କର୍ମଚାରୀମାନେ ଟେଣ୍ଟ ଓ ଅନ୍ୟାନ୍ୟ ସମସ୍ତ ଜିନିଷ ପତ୍ର ନେଇ କ୍ୟାମ୍ପ ଗ୍ରାଉଣ୍ଡକୁ ଗଲାପରେ ମୁଁ ୨ଦିନ ପରେ ଯିବି ବୋଲି ସ୍ଥିର କରିଥିଲି । କିନ୍ତୁ ୨ ଦିନ ପରେ ଯାଇ ଦେଖେତ ସବୁ ଜିନିଷ ପତ୍ର ଖୋଲା ଓ ସେଥିରୁ କିଛି ଖାଦ୍ୟ ଏପରିକି ଚିନି, ଅମୁଲ, ଅଟା, ଚାଉଳ ଖୋଲା ହୋଇ, ସାରି ଦିଆଯାଇଛି । ଦୁଇଦିନରେ ଖାଦ୍ୟ ଏପରିକି ଚା ମଧ ସମସ୍ତ ଅଫିସରଙ୍କ ସମେତ ସମସ୍ତ ଷ୍ଟାଫ୍ ଖାଇ ଦେଇଛନ୍ତି । ତେଣୁ ମୁଁ ସବୁ ଜିନିଷକୁ ଚାର୍ଯ ନେବାକୁ ମନା କରିଦେଲି ଓ ଶିବିର ତାରିଖ ପୂର୍ବରୁ ଏହା କିପରି ଖର୍ଚ୍ଚ କରି ଦିଆଗଲା ଓ ଏହା କିପରି ଖର୍ଚ୍ଚ ଦେଖାହେବ, ତେଣୁ ମୁଁ ତାକୁ ମିଛ ସତ ଲେଖିପାରିବି ନାହିଁ ବୋଲି ରୋକଠୋକ ମନା କରିଦେଲି । ତେଣୁ, ସମସ୍ତଙ୍କ ଚିନ୍ତା - ଅଫିସରଙ୍କ ସମେତ ସବୁ ଟ୍ରେନିଂ ଷ୍ଟାଫ୍ ଟେଣ୍ଟ ବାହାରେ ଓ ମୁଁ ଭିତରେ, କେବଳ କ୍ୱାଟର ମାଷ୍ଟର (ଜଣେ ସୁବେଦାର ର୍ୟାଙ୍କର ଲୋକ, ମୋଠାରୁ କିଛି କଥା ଓ ଅଫିସରଙ୍କର ଠାରୁ କିଛି କଥା ଏପଟ ସେପଟ କରୁଥିଲେ । ମୁଁ କିନ୍ତୁ ଗୋଟାଏ କଥାରେ ଜିଦ୍ ଧରିଥିଲି, ଯେତେକ ସାରିଛ ତାକୁ ଆଗ ଭରଣା କର । ବସ୍ତାରେ ଯଦି ଟ. ୯୫ କିଲୋ, ମୁଁ ସେତିକି ହିଁ ଚାର୍ଯ ନେବି ଓ ପିଲାଙ୍କ ଲଙ୍ଗର ଆରମ୍ଭ ହେଲେ ତାକୁ ଖର୍ଚ୍ଚ କରିବି ।

ଶେଷରେ ସେଇଆ ହେଲା ଗାଡ଼ି ପଠାଇ ସବୁ ଜିନିଷ ବଜାରରୁ ଅମୁଲ, ଚାଉଳ, ଡାଲି, ପରିବା ମଧ୍ୟ କିଣି ଆଣି ସଂଧ୍ୟା ୩ଟା ବେଳେ, ମତେ ଆଣି ଦିଆଗଲା ଓ ମୁଁ ତାକୁ ହିସାବକୁ ନେଲି। ସେଦିନ ରାତିରେ ସମସ୍ତେ ନିକଟସ୍ଥ ବଜାରକୁ ଯାଇ ସଉଦା ପତ୍ର କିଣାକିଣି କରି ଆଣି ରୋଷେଇ କରିଥିଲେ। ମୁଁ କିନ୍ତୁ ଘରୁ ନେଇଥିବା ଚୁଡ଼ା ଖାଇ ଶୋଇଥିଲି ଓ କଦଳୀ ଓ କିଛି ଫଳ ମଧ୍ୟ ଖାଇଥିଲି। ଆମ ଟେଣ୍ଟରେ ଆମେ ୩ ଜଣ କିରାଣୀ ରହୁଥିଲୁ। ସେଦିନ କିନ୍ତୁ ସମସ୍ତଙ୍କର ଗୋଟିଏ କଥା, ତୁମେ ଯାହାକଲ ଭଲ କଲନି। କମାଣ୍ଡିଂ ସାର ୧୧ଟାରୁ ୩ଟା ପର୍ଯ୍ୟନ୍ତ ତୁମ ଟେଣ୍ଟ ଆଗରେ ଠିଆ ହୋଇ ରହିଥିଲେ। ଅନ୍ୟ ଇନ୍‌ସ୍‌ଟ୍ରକ୍ଟର ମାନେ ମଧ୍ୟ ତାଙ୍କ ପାଖରେ ସେମିତି ଠିଆ ହୋଇ ରହିଥିଲେ।

ସେ ଶିବିରର ଶେଷ ଦିନରେ ମୁଁ ଓ ସମସ୍ତ ରାଜ୍ୟ ସରକାରୀ କର୍ମଚାରୀ, ଲସ୍କର, ପିଅନ ଓ କିରାଣୀଙ୍କଠାରୁ ତାଙ୍କର, ଭତ୍ତା ଯାହାକି ସରକାର ଦେଇଥାନ୍ତି, ତାକୁ କାଟି ରଖିବାକୁ, ଏକାଉଣ୍ଟାଣ୍ଟକୁ କହି କାଟି ଦେଲି। ଯାହା ଫଳରେ ସେମାନେ ମଧ୍ୟ ମୋ ଉପରେ କ୍ଷିପ୍ତ ହୋଇ ଉଠିଲେ। କାରଣ ମୋର ଗୋଟିଏ ଜିଦ୍‌ ପିଲାଙ୍କ ଖାଦ୍ୟରୁ, ଯେଉଁମାନେ କ୍ୟାମ୍ପ ଭତ୍ତା ପାଉଚନ୍ତି ସେମାନେ କାହିଁକି, ସେଥିରେ ଭାଗନେବେ। ତାଙ୍କ ପାଇଁ ମଧ୍ୟ ରାସନ ଆସିଛି, ସେମାନେ ଖାଇବେ ଓ ପଇସା ଦେବେ। ତାହାହିଁ ହେଲା ଓ ଶିବିରର ଅଡିଟ୍‌ ମଧ୍ୟ ଅଳ୍ପଦିନ ଭିତରେ ସରିଗଲା। ମୁଁ ଏକାଉଣ୍ଟାଣ୍ଟଙ୍କୁ ସମ୍ପୂର୍ଣ୍ଣ ସାହାଯ୍ୟ କରି ଅଡିଟ୍‌ କରାଇ ନେଇଥିଲି।

ଏମିତି ଛକା ପଞ୍ଝାରେ ଚାଲିଥିଲା ଅଫିସ୍‌। ସେତେବେଳେ ଜଣେ ହେଡ୍‌କ୍ଲର୍କ ଥିଲେ ମିଲିଟାରୀ ଫେରନ୍ତା ହନହଗା ମହାଶୟ। ଆଦିବାସୀ ସମ୍ପ୍ରଦାୟର। ପାଠ ଅଷ୍ଟମ ପାଶ ଅକ୍ଷରଗୁଡ଼ିକ ଅତି ସୁନ୍ଦର ହେଲେ, ଭାରି ଡରୁଆ। ପାଟି କରିଦଲେ ତାଙ୍କର ପିଳେହି ପାଣି ହୋଇଯାଏ। ତେଣୁ ସେ ମୋ ସହିତ ବେଶୀ କଥା କୁହନ୍ତି ନାହିଁ। କାରଣ କେହି ୪ର୍ଥ ଶ୍ରେଣୀ ଛୁଟି କି ଡେରିରେ ଆସିଲେ ତାଙ୍କଠାରୁ ନାଶ ନଚେତ୍‌ ପାନ ଆଣିବାକୁ କୁହାଯାଏ।

ନଚେତ୍ ତାଙ୍କ ଆପ୍ଲିକେସନ୍ ଅଫିସରଙ୍କ ପାଖରେ ପୁଟ୍ଅପ ହୁଏ ନାହିଁ। ଯାହାକି ମୋ କ୍ଷେତ୍ରରେ ମଧ୍ୟ ହୋଇଥିଲା; ସେ ନାଶ ଖାଇ , (WPB), ଓ୍ୱେଷ୍ଟ ପେପର ବକ୍ସରେ (ଡଷ୍ଟବିନ୍ ବି କୁହାଯାଇପାରେ) ପଚ ପଚ ଛେପ ପକାନ୍ତି। ଯାହାକି ମୁଁ ସାଧାରଣରେ ଗ୍ରହଣ କରିପାରେ ନାହିଁ। ତେଣୁ ମୁଁ ସର୍ବଦା ତାଙ୍କ ଉପରେ ବିରକ୍ତ ହୁଏ – କିଛି ଗୋଟାଏ ଡିସକସନ୍ କରିବାକୁ ଗଲେ ସେ ଆଗ ସେଇ ଡଷ୍ଟବିନ୍‌ଟାକୁ ଟେବୁଲ୍ ତଳୁ ଟାଣିଆଣି ପଚ କରି ମୋଞ୍ଚାଏ ଛେପ ପକାଇଲା ପରେ ଯାହା କଥାବାର୍ତ୍ତା କରନ୍ତି। ଯେଉଁଥିପାଇଁ କି ମୁଁ ଅସହ୍ୟ ହୋଇଉଠେ।

ସେ ଭିତରେ ଆଉ ଗୋଟିଏ ଘଟଣା ବି ଘଟିଗଲା। ସମ୍ବଲପୁର ଜି.ଏମ୍ କଲେଜ ଭିତରେ ଆମର ଅଫିସ୍। ସେ ସମୟରେ ନନ୍ଦିନୀ ଶତପଥୀ ଥାଆନ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ। ତାଙ୍କର ପ୍ରୋଗ୍ରାମ ଥିଲା। ସିଏ ଫିତା କାଟିବେ, କଲେଜ ବାଉଣ୍ଡ୍ରିକୁ ଲାଗି ଗୋଟିଏ ରାସ୍ତା ଦେବ ଯାହାକି ଅତି ବେଶିରେ ୫୦୦ ମିଟର ହେବ କି ନାହିଁ; କଲେଜ ବାଉଣ୍ଡ୍ରିକୁ ଲାଗି ୧୫ ଫୁଟର ରାସ୍ତା କଲେଜ ବାଉଣ୍ଡ୍ରିରୁ ଫାଟକ ରେଳ ଷ୍ଟେସନ ପର୍ଯ୍ୟନ୍ତ। ରେଳ ଗାଡ଼ି ସମ୍ବଲପୁରକୁ ଯାଉଥିଲେ ମଧ୍ୟ ତା' ଭୁବନେଶ୍ୱରରୁ ସିଧା ସଳଖ ନଥିଲା। ତେଣୁ ବସ୍ ସର୍ଭିସ୍ ହିଁ ସମ୍ବଲପୁର ଯିବାକୁ ଏକମାତ୍ର ପନ୍ଥା।

ସେଦିନ ସମୟ ପ୍ରାୟ ୧୧ଟା ହେବ, ପୋଲିସ୍ ଫୋର୍ସ ଆସି ପହଞ୍ଚିଗଲେ, ରାସ୍ତା ଉପରେ, ଛାତ୍ର ସଂସଦର ପିଲା ପ୍ରୋଟେଷ୍ଟ କଲେ ଓ ଶେଷରେ ଟେକା ପଥର ମାଡ଼ ଚାଲିଲା। ପୋଲିସ୍ ବି ନଛୋଡ଼ ବନ୍ଧା। ସେମାନେ ପ୍ରଥମେ ବ୍ଲାଙ୍କ୍ ଫାୟାରିଂ କଲେ ଓ ପରେ ପରେ ଟିଅର ଗ୍ୟାସ୍ ଫାୟାର କଲେ। ବାଉଣ୍ଡ୍ରି ଭିତରେ ପଶି ଲାଠି ଚାର୍ଯ କରିନଥିଲେ କିନ୍ତୁ କାରଣ କ'ଣ ଥିଲା ତା ଏବେ ମନେପଡୁନି।

ତେବେ ସେ ଦିନର ବିଶେଷ ଘଟଣା ଥିଲା। ପିଲାମାନେ (କଲେଜ ଛାତ୍ର) ଆସି ଅଫିସରେ ପଶି ଷ୍ଟ୍ରଙ୍ଗ୍ ରୁମ୍‌ରୁ ରାଇଫଲ ଓ ଗୁଳି ନେବାକୁ ଜୋର ଜବରଦସ୍ତି କଲେ। ତେଣୁ ବୁଝାଇସୁଝାଇ ତାଙ୍କୁ କେତେକ ପୁରୁଣା

(କଣ୍ଡମ) ଶାର୍ଟ-ପେଣ୍ଟ ଓ ଗନି ବ୍ୟାଗ (ଅଖା) ଦେଇ, ତାକୁ ପାଣିରେ ଭିଜାଇ ଟିଅର ଗ୍ୟାସ କ୍ୟାଟ୍ରିଜ୍ ଉପରେ ପକାଇ ଦେଲେ ସେଥିରୁ ଲୁହ ବୁହା ଗ୍ୟାସ ବନ୍ଦ ହୋଇଯିବ କହି ତାଙ୍କୁ ବିଦା କଲୁ। ଏ ସମୟରେ ଜଣେ କଲେଜର ଏନ୍.ସି.ସି ଅଫିସରଙ୍କ ମୁଣ୍ଡରେ ବାଜିଥିଲା ଲୁହ ବୁହା ଗ୍ୟାସର ଗୁଳି। ତାଙ୍କ ମୁଣ୍ଡ ଫାଟି ଯାଇଥିଲା। ତାଙ୍କୁ ବହୁ କଷ୍ଟରେ ଗ୍ରାଉଣ୍ଡରୁ ଆଣି, ଅଫିସ ବାରଣ୍ଡାରେ ଶୁଆଇ, କ୍ୟାଣ୍ଟିନ୍ ଷ୍ଟୋରରୁ ମଦ (RUM) ଆଣି ୨ ପେଗ୍ ଖଣ୍ଡେ ପିଆଇ ତାଙ୍କୁ ସାଷ୍ଟାଙ୍ଗ କରି ମୁଣ୍ଡରେ ପଟିବାନ୍ଧି ଦେଇଥିଲୁ; ଅଫିସରେ ପ୍ରାୟ ଫାଷ୍ଟଏଇଡ୍ କିଟ୍ ରଖାଯାଇଥାଏ। କାରଣ ବେଳେବେଳେ କ୍ୟାଡେଟ୍ ଛୋଟ ବଡ଼ ଦୁର୍ଘଟଣାର ସମ୍ମୁଖୀନ ହେବା ସ୍ୱାଭାବିକ ଘଟଣା।

**ଘଟଣା ନଂ - ୩**

ମୁଁ ଟ୍ରେନିଂ କିରାଣୀ ଥାଏ, ତେଣୁ ପିଲାମାନଙ୍କ ମିଲିଟାରୀ ଶିକ୍ଷା ଯାହା ତା' ପାଇଁ ମତେ ମଧ୍ୟ ଟ୍ରେନିଂ ଷ୍ଟାଫ୍‌ଙ୍କ ସହିତ ଯିବାକୁ ପଡ଼େ, ମୋ ସହିତ ୨/୪ଜଣ ଲାସ୍କର ମଧ୍ୟ ଯାଇଥାନ୍ତି। ଏମିତି ଥରେ ବରଗଡ଼ ସ୍କୁଲର ପିଲାଙ୍କୁ .୨୨ (ପଏଣ୍ଟ ଟୁ.ଟୁ) ବନ୍ଧୁକରୁ ଗୁଳିଚାଳନା ଶିକ୍ଷା ଦେବା ପାଇଁ ସ୍ଥିର ହୋଇଥିଲା। ତେଣୁ ପିଲାଙ୍କ ସହିତ, କେଉଁଠି ଫାଏରିଂ ହେବ ଓ ପୋଲିସକୁ ଖବର ଦେବା ପାଇଁ ସ୍କୁଲର ପାର୍ଟଟାଇମ୍ ଏନ୍.ସି.ସି. ଅଫିସରଙ୍କୁ ବହୁ ଆଗରୁ ସୂଚାଇ ଦିଆ ହୋଇଥିଲା କିନ୍ତୁ ଦୁଃଖର କଥା ଯେ, ସ୍କୁଲର ହେଡମାଷ୍ଟରଙ୍କ ଠାରୁ ଚିଠିଟି ନେଇ ସେ ସମ୍ପୂର୍ଣ୍ଣ ଭୁଲି ଯାଇଥିଲେ।

ଆମେ ୧୦ଟା ସୁଦ୍ଧା ସ୍କୁଲରେ ପହଁଞ୍ଚି ଦେଖିଲୁ ସବୁ ପିଲା ଆସି ଯାଇଛନ୍ତି। ସ୍କୁଲର ଟ୍ରୁପ୍ ଲିଡର ବୋଧେ ଚିଠି ପାଇବା ଦିନ ହିଁ ଖବରଟିକୁ କ୍ୟାଡେଟ୍‌ମାନଙ୍କୁ ଟ୍ରେନିଂ ବିଷୟରେ ସୂଚାଇ ଦେଇଥିଲେ, ତେଣୁ ଆଉ ସେ ବିଷୟରେ ଚର୍ଚ୍ଚା ହୋଇନଥିବା ମନେ ହେଲା। ତେବେ ପୋଲିସକୁ ଖବର ଦେଇନଥିବା ଓ ଫାଏରିଂ, ପଏଣ୍ଟ ଠିକ୍ କରି ନଥିବାରୁ, ଆମେ ହେଡମାଷ୍ଟ୍ରଙ୍କ ଅଫିସ ରୁମ୍ ପଛରେ - ଟାରଗେଟ ମାନ ପୋତି ପିଲାଙ୍କୁ

ଫାଏରିଂ ଟ୍ରେନିଂ ସାରି ଦେଇଥିଲୁ। ପ୍ରାୟ ଫାଏରିଂ ଶେଷ ବେଳକୁ, ସ୍କୁଲର ଏନ୍.ସି.ସି. ଅଫିସର ଆସି ପହଞ୍ଚିଲେ ଓ ସ୍କୁଲ କାନ୍ଥ ନଷ୍ଟ ହୋଇଥିବା ଦେଖି ବ୍ୟସ୍ତ ଓ ଚିନ୍ତିତ ହୋଇ ପଡ଼ିଲେ। ସେଠାରୁ ଆମକୁ ସୋହେଲା ଯିବାର ଥିଲା ତେଣୁ ତାଙ୍କୁ ଟଙ୍କା ୨୦୦ ଧରାଇ ଦେଇ। କାନ୍ଥ ରିପାରିଂ କରିବାକୁ କହି ଚାଲିଯାଇଥିଲୁ।

**ଘଟଣା ନଂ ୪ (ବିଶେଷ ଘଟଣା)**

ମୁଁ ସେତେବେଳକୁ ସମ୍ବଲପୁରକୁ ପିଲାମାନଙ୍କୁ ନେଇ ଯାଇଥିଲି। ମୋ ବିରୁଦ୍ଧରେ ବେଶ ଏକ ଚୋରା କାରବାର ଚାଲିଛି ବୋଲି ମୁଁ କେବେ ବିଶ୍ୱାସ କରି ନଥିଲି। ସେଦିନ ବୋଧେ ୨୫ ତାରିଖ ମେ ୧୯୭୫ ମସିହା। ଅଫିସରେ ସେଦିନର ଖବର କାଗଜ ପଢ଼ି, ଟେବୁଲ୍ ବାଡ଼ାଇ ମୋର କ୍ରୋଧ ଜାହିର କଲି ସରକାରଙ୍କ ଉପରେ। ଏପଟେ ନନ୍ଦିନୀ ସେ ପଟେ ଇନ୍ଦିରା। ଖବର ଅନୁସାରେ ମହତାବଙ୍କଠାରୁ ଆରମ୍ଭ କରି ବିଜୁବାବୁଙ୍କ ସମେତ ବହୁ ନେତା ଜେଲରେ କାରଣ ଭାରତ ସରକାରଙ୍କର ଏମରଜେନ୍‌ସୀ।

ଠିକ୍ ୧ଟା ବା ୨ଟା ବେଳକୁ। ମୁଦା ଲଫାଫା ଭିତରେ ଚିଠି ଆସି ପହଞ୍ଚିଲା–ନିୟମ ଅନୁସାରେ ଡାକ ରିସିଭ ଖାତାରେ ଦସ୍ତଖତ କରି ଚିଠି ରଖିଲି – ପଢ଼ି ଦେଖିଲି ମୋର ସସପେନ୍ସ ଅର୍ଡର। କାରଣ କ'ଣ ତା ମଧ୍ୟ ଦର୍ଶାଯାଇ ନଥିଲା। କେବଳ ଉଚ୍ଚଶିକ୍ଷା ବିଭାଗର ଚିଠି ନଂ ଟି ତଳେ ଦିଆଯାଇଥିଲା।

ମୁଁ ଭାବିନେଲି, ଯେ ସକାଳୁ ଯେଉଁ ଟେବୁଲ୍ ବାଡ଼େଇ ମୋର ସରକାରଙ୍କ ପ୍ରତି କ୍ରୋଧ ଜାହିର କରିଥିଲି ବୋଧେ ସେଇଥିପାଇଁ ଆମ ବଡ଼ବାବୁ (ହନହଗା)ଙ୍କର ଏ ପ୍ରେମ ଚିଠି।

ଇଆଡ଼େ ଏମରଜେନ୍‌ସୀ ସେପଟେ ମୋର ଟେବୁଲ୍ ବାଡ଼େଇବା ଏହା ନିଶ୍ଚୟ ପକ୍ଷେ ଅଫିସ ଡେକୋରମ ଭଙ୍ଗ (ଶିଷ୍ଟାଚାର) ପାଇଁ ମତେ

ଦଣ୍ଡ ଦିଆଯାଇଛି । କିନ୍ତୁ ତା’ ଯଦି ଚିଠିରେ ଉଲ୍ଲେଖ ହୋଇଥାନ୍ତା ତେବେ ମୁଁ ନିଶ୍ଚୟ ଚୁପ ଚାପ ଏମରଜେନ୍‌ସୀ ହଟିବା ପର୍ଯ୍ୟନ୍ତ ବସିଥାନ୍ତି, କିନ୍ତୁ ତା’ ନଥିବାରୁ (Charge frame) ନ ହୋଇଥିବାରୁ ମୁଁ ଗ୍ରୁପ କମାଣ୍ଡର ଓ DPIଙ୍କୁ ଘନ ଘନ ଚିଠି ଦେବାରେ ଲାଗିଲି ଓ ମୋର ନିଲମ୍ବନ କାରଣ ମଧ୍ୟ ସେଥିରେ ଉଲ୍ଲେଖ ନଥିବାରୁ ମୁଁ ପ୍ରାୟ ୪-୫ ଦିନରେ ଗୋଟିଏ ଚିଠି ଗ୍ରୁପ ଓ ଡିପିଆଇଙ୍କୁ ପଠାଇବାକୁ ସ୍ଥିର କରିନେଇଥିଲି ।

ଗ୍ରୁପ କମାଣ୍ଡର ଆମ ଅଫିସର Next Higher Rank ଥିବାରୁ ମୁଁ ସେଠାକୁ ଯାଇ ହାତେ ହାତେ ଚିଠି ଦେଉଥିଲି । କିନ୍ତୁ ଦିନେ ମତେ ଅଫିସ ଭିତରକୁ ପ୍ରବେଶ କରିବା ପାଇଁ ମନା ହୋଇଥିଲା, ଯାହା ଫଳରେ କି ଅଫିସର ଏଡମ ଅଫିସରଙ୍କ ଜରିଆରେ ବେଶ ଷୋଧଣ ଦେଇଥିଲି । ସେତେବେଳେ ସେଇ ଅଫିସରେ । ମିଃ ବେହେରା ଓ ମୋର ବନ୍ଧୁ ଯଥା ମଉସା ଶ୍ୱଶୁର ଶରତ ଚନ୍ଦ୍ର ପଟ୍ଟନାୟକ କାର୍ଯ୍ୟରତ ଥିଲେ । ଶରତ ବାବୁ ମିଲିଟାରୀ ଅଫିସରଙ୍କ କାର୍ଯ୍ୟକଳାପକୁ ସର୍ବଦା ବିରୋଧ କରୁଥିଲେ । ଏପରିକି ବ୍ରହ୍ମପୁର ଜଣେ ମିଲିଟାରୀ (ଡିଫେନ୍ସ) ଅଫିସରଙ୍କୁ ଏନ୍.ସି.ସି. ଡାଇରେକ୍ଟର କଟକକୁ ଯାଇ ୨୪ ଘଣ୍ଟା ଭିତରେ ତାଙ୍କୁ ସେଠାରୁ ବଦଳି କରି (ଆଟାଚମେଣ୍ଟ) କଟକକୁ ନେଇ ଆସିଥିଲେ । କେବଳ ଗୋଟାଏ ଟେଲିଗ୍ରାମରେ ସେ ଅଫିସର ପଟ୍ଟନାୟକ ବାବୁ କଟକରୁ ବ୍ରହ୍ମପୁର ପହଞ୍ଚିବା ଭିତରେ । ସିଏ (ଅଫିସର) କଟକ ପାଇଁ ଟ୍ରେନ ଧରି ସାରିଥିଲେ, ସିଏ ମଧ୍ୟ ଏ ମାମଲାରେ ମୋର ସପକ୍ଷ କିମ୍ବା ବିପକ୍ଷରେ ପାଟି ଫିଟାଇ ନଥିଲେ ।

ମୋର ଲେଖାରେ - ମୁଁ ଛୁଟିନେବା ଓ ମୋର ୫ ଦିନର ଅନୁପସ୍ଥିତିରେ ମୋ ବିଭାଗରେ ପହଞ୍ଚିଥିବା ଦୁଇଟି ଚିଠି ସହ ୩ ମାସ ଭିତରେ । ମୋର କାରଣ ଦର୍ଶାଅ ଚିଠି ଓ ଭତ୍ତା ନ ଦେବାର କାରଣ ଲେଖି ପଠାଉଥିଲି, ୩ ମାସ ଭିତର ମୋର ପ୍ରାୟ ୧୫ ଖଣ୍ଡ ଚିଠି - ଉଚ୍ଚଶିକ୍ଷା ବିଭାଗ ସହିତ ସରକାରଙ୍କର ଉଚ୍ଚଶିକ୍ଷା ନିର୍ଦ୍ଦେଶକଙ୍କୁ ମଧ୍ୟ ପଠାଉଥିଲି; ଏବଂ ସର୍ବଶେଷରେ ଜଣେ ଡେପୁଟି ଡି.ପି.ଆଇ ଯାଇ ଅନୁସନ୍ଧାନ କରି

ଆସିଥିଲେ। ସେତେବେଳକୁ ଉଚ୍ଚଶିକ୍ଷା ବିଭାଗ କଟକରୁ ଭୁବନେଶ୍ୱର ଆସିଯାଇଥାଏ। ଓ ମୋର ମମଲାକୁ ତୁଟାଇବା ପାଇଁ ସମ୍ୱଲପୁରୀ ଚାଉଳ ୨ ବସ୍ତା ତାଙ୍କ ଆସିବା ବସରେ ପଠାଇଥିବାର ଖବର ପାଇଲି ଓ ପ୍ରାୟ ୧୫ ଦିନ ଭିତରେ ମତେ ବଦଳି, ଅନୁପସ୍ଥିତ ରହିଥିବା ଦିନଗୁଡ଼ିକ ପାଇଁ ଦରମା ବିହୀନ ଓ ନିନ୍ଦା ଏଭଳି ୩ ପ୍ରକାର ଦଣ୍ଡ ମିଳିଥିଲା ତା ଥିଲା (ଇଂରାଜୀରେ -Censure, suspension and EOL 8/6 ରୁ 15/6 ଛୁଟି - ପାଇଁ E.O.L. ଏବଂ Suspension Period from 9.6.75 to 27.8.75 joined on 28.8.75)

ଏଭଳି ଆଦେଶକୁ ମୁଁ ପ୍ରାୟ ୧୦ ବର୍ଷ ପର୍ଯ୍ୟନ୍ତ ଚିଠି ଦେଉଥିଲି। ସରକାରୀ ଓ ନିର୍ଦ୍ଦେଶକ ଉଚ୍ଚଶିକ୍ଷା ବିଭାଗକୁ ଶେଷରେ ଚିଫ ସେକ୍ରେଟେରୀ ଶ୍ରୀଯୁକ୍ତ ଜ୍ଞାନ ଚାନ୍ଦ ତାଙ୍କ ଦପ୍ତରକୁ ୧୯୮୪ ମସିହା (ମୁଖ୍ୟ ଶାସନ ସଚିବ) ଡାକି କହିଲେ, "ଦେଖ ତୁମର ଏଥିରେ କିଛି ଦୋଷ ନାହିଁ - ତୁମେ ଯାହା ଲେଖିଛ ତା ମଧ୍ୟ ସତ ହୋଇଥିବ କାରଣ ତାହା ଅଫିସ ରେକର୍ଡରେ ଥିବ। ତୁମ ଆପିଲିଏଟ ଅଫିସର ହେଉଛନ୍ତି ଉଚ୍ଚଶିକ୍ଷା ବିଭାଗ। ସେ ମଧ୍ୟ କର୍ଣ୍ଣପାତ କରୁ ନାହାନ୍ତି ତୁମର ଅନୁରୋଧକୁ। ତୁମର ଯେଉଁ EOL ହୋଇଛି ତା ମଧ୍ୟ ବେଶି ଟଙ୍କା ନୁହଁ। ମୁଁ ଯଦି କୌଣସି ଅଫିସରଙ୍କୁ ପଠାଇବି ଇନ୍‌କ୍ୱାରୀ ବା ତଦନ୍ତ ପାଇଁ ସେ ପୁଣି ସେଇକଥା ଦୋହରାଇ ଦଣ୍ଡ ଠିକ୍ ଅଛି ବୋଲି ରିପୋର୍ଟ ବା ବିବୃତି ଦେବେ। ତେଣୁ ତୁମର କିଛି ଲାଭ ହେବନାହିଁ। ବରଂ ତୁମର ଯେତିକି ଦରମା କମିଲା ସେଇ ଟଙ୍କାର ଅଫିସକୁ ଆସୁଥିବା (Govt. Press) କାଗଜ କିମ୍ବା ଅନ୍ୟ ଜିନିଷ ନେଇ ବିକ୍ରି କରିଦିଅ ସେତେବେଳେ ମୁଁ ସାହାଯ୍ୟ କରିବି।

ତାଙ୍କୁ ମୁଁ ଏତିକି କହିଥିଲି, ଆପଣ ମୋର କାଗଜ ପତ୍ର / ଚିଠିରୁ ଯେତିକି ବୁଝି; ତା ସତ ହୋଇଥିବ ଜାଣି ପାରିଲେ, ସେତିକିରେ ମୋର ଏ ୧୦ ବର୍ଷର ପରିଶ୍ରମ ସାର୍ଥକ ହୋଇଗଲା ବୋଲି ଭାବିବି ଓ ଏଥିପାଇଁ ଆପଣଙ୍କୁ ଅଶେଷ ଅଶେଷ ଧନ୍ୟବାଦ। ମୋ କଥା ଶୁଣି, ସେ ଟିକିଏ ହସି

ଦେଇଥିଲେ, ଏବଂ ସେ ହସ ଟିକକ ମତେ ଲକ୍ଷେଟଙ୍କା ପାଇଲା ଭଳି ଲାଗିଲା ।

ନମସ୍କାରଟିଏ କରି, ସେକ୍ରେଟେରିଏଟ୍‌ରୁ ଫେରିଲି । ସେ ସମୟରେ ମୁଁ ୧ମ ଓଡ଼ିଶା ଘୋଡ଼ସବାର ବାହିନୀରେ ଅପର ଡିଭିଜନ କ୍ଲର୍କ ଭାବେ କାର୍ଯ୍ୟ କରୁଥିଲି ।

ମୁଁ ସମ୍ବଲପୁରରେ ଥିବା ବେଳେ ଆଉ ଗୋଟିଏ ଘଟଣା ମଧ୍ୟ ଜଳ ଜଳ କରି ଦିଶୁଛି ।

ମୁଁ ଟ୍ରେନିଂ କ୍ଲର୍କ ଭାବେ କାର୍ଯ୍ୟ କରୁଥାଏ । ସେତେବେଳେ ବିଭିନ୍ନ କ୍ୟାମ୍ପ । ଯଥା–ATC - Annual Training Camp

(CATC) Combined Annual Trg. Camp
(TSC) Thal Sainik Camp
(ALC - Advanced Leadership Camp
V.S.C. - Vayu Sainik Camp (for Air Cdt)
ALC with Naval Bias - (Adv Leadership Camp)
NIC - National Intergration Camp
MC - Mountaineering Camp
P.J.T. - Parachute Jumping Training
Trek - Treaking (DG NCC Level)
Attachment - Attachment Camp with Defence Establishment
RDC-Republic Day Camp (New Delhi)କୁ ପିଲା ପଠାଯାଉଥାଏ ।

ଜି.ଏମ୍. କଲେଜର ୨ ବର୍ଷର ଏନ୍.ସି.ସି. ଛାତ୍ରଙ୍କୁ Trekking Camp ପଠାଇବାର ଥିଲା । ତେଣୁ ଜଣେ ଏକଦମ ପାତଳା ପିଲା ସେ ଟ୍ରେନିଂକୁ ଯିବାକୁ ମତେ ବାଧ କରୁଥିଲାବେଳେ, ମୁଁ ତାକୁ ମନା କରି ଦେଲି ଯେ, ସିଏ ସେ କ୍ୟାମ୍ପକୁ ଯାଇପାରିବ ନାହିଁ କାରଣ ସେ ଟ୍ରେନିଂକୁ ସହିବା ଭଳି ଦକ୍ଷତା ତାର ନାହିଁ । ତେଣୁ ମୁଁ ଆଉ ଜଣେ ହୃଷ୍ଟ-ପୁଷ୍ଟ ଥିବା କେଡେଟ୍‌କୁ

ପଠାଇ ଦେଲି; ସେଇ ରାଗ ସୁଝାଇବା ପାଇଁ ଗୁଡ଼ାଏ ପିଲାଙ୍କୁ ଏକାଠି କରି ମତେ ମାରିବାକୁ ବସିଥିଲା । ତେଣୁ ମୋ ଅଫିସର ଲସ୍କର ଓ ପିଅନମାନେ ଜାଣି; ସେଦିନ ଅଫିସ ପରେ ମତେ ବାହାରକୁ ଯିବାକୁ ମନା କଲେ ଓ ମୋ ସାଇକେଲଟିକୁ ମଧ୍ୟ ଚାବି ପକାଇ ରଖିଲେ ।

ମୁଁ ଭାବିଲି, ଏଇନେ ଗଲେ ଅନ୍ତତଃ, ଅନ୍ୟ କଲେଜ ପିଲା ଓ ରାସ୍ତାରେ ଯାଉଥିବା ଲୋକ ମତେ ସାହାଯ୍ୟ କରି ପାରନ୍ତି କିନ୍ତୁ ରାତି ହେଲେ । ମତେ ଚିହ୍ନିଥିବା ଲୋକ ବି ମୋତେ ସାହାଯ୍ୟ କରିବାକୁ କେହି ନଥିବେ । ତେଣୁ ମୁଁ ଖଣ୍ଡେ (Cane) ବେତ, (ଯାହାକି ସମର ଶିକ୍ଷାର୍ଥୀ ବାହିନୀର ଶିକ୍ଷାର୍ଥୀମାନଙ୍କୁ ଶିକ୍ଷା ଦିଆଯାଏ) ଧରି, ଗୋଡ଼କୁ ବାଡ଼େଇ ବାଡ଼େଇ, ଚାଲିଲି ମୋ ପଛେ ପଛେ ଡରି ଡରି ୨-୩ ଜଣ ଲସ୍କର ମଧ୍ୟ ଆସୁଥିଲେ ସେମାନଙ୍କ ମଧ୍ୟରୁ ବାଗ, ଭୋଇଙ୍କ କଥା ମନେଅଛି-

ମୁଁ ଠିକ୍ ଗେଟ ପାର ହୋଇଛି, ମୋତେ ପ୍ରାୟ ୧୦-୧୫ ଜଣ ଘେରି ବିଭିନ୍ନ ପ୍ରଶ୍ନ କରିବାକୁ ଲାଗିଲେ । କିନ୍ତୁ ଠିକ୍ ସମୟରେ ଜଣେ ସିନିଅର ପିଲା ମତେ ନମସ୍କାର କରି, ସେମାନଙ୍କୁ ଚୁପ ରହିବାକୁ କହି, କଲେଜ ଆଗରେ ଥିବା ଗୋଟିଏ ହୋଟେଲକୁ ନେଇ ଚା' ବରାଦ କରିବା ପୂର୍ବକ, କ'ଣ ହୋଇଛି ବୋଲି ପଚାରି ବୁଝି ଥିଲା । ସେ ପିଲା ଯିଏକି ଟ୍ରେକିଙ୍ଗ କ୍ୟାମ୍ପ ଯିବାକୁ ଜିଦି ଧରିଥିଲା ସିଏ ମଧ୍ୟ ସେଠାରେ ଥିଲା ।

ମୁଁ ସମସ୍ତ କଥା କହି, ଶେଷରେ ସେ ସିନିଅର ପିଲାଙ୍କୁ କହିଲି, ଇଏ କ'ଣ ଟ୍ରେକିଙ୍ଗ କ୍ୟାମ୍ପରେ ଚାଲିପାରିବ ୫୦ କି.ମି. ତେଣୁ ସେ ମଧ୍ୟ ବୁଝାଇ ଦେଲା ଯେ, ତା' ପ୍ରକୃତରେ କଷ୍ଟ କ୍ୟାମ୍ପ । ତେଣୁ ତାକୁ ମୁଁ ଇଣ୍ଟିଗ୍ରେସନ କ୍ୟାମ୍ପ ପାଇଁ ଠିକ୍ କରିଛି ବୋଲି ଶୁଣି, ସିଏ ମଧ୍ୟ ଖୁସି ହୋଇଗଲା, କହିଲା ଅନ୍ୟ ରାଜ୍ୟର ଗେଷ୍ଟ ହୋଇଯିବୁ । ତା ଠୁ ଭଲ କ୍ୟାମ୍ପ କ'ଣ ଅଛି - ଏବଂ ସେଇଠି ସେ ମାମଲା ଦଫା ରଫା ହୋଇଯାଇଥିଲା । (ମନେ ପଡୁନି, ସେ ସିନିଅର ପିଲାଟି ବୋଧେ ଛାତ୍ର ପୋଲିସର ଟିଅର ଗ୍ୟାସ ଫାୟାରିଂରେ ମୁଁ ସାହାଯ୍ୟ କରିଥିବା ସମୟରେ ଲିଡିଂ ନେଇଥିବା ମନେହୁଏ)

ସମ୍ବଲପୁରରୁ ମୁଁ ଆସି କଟକ ଗ୍ରୁପ କମାଣ୍ଡରଙ୍କ ଅଫିସରେ ୧.୯.୭୫ରେ ଯଏନ କଲି ମୋର ଏହି ମାମଲା ଇନ୍‌କ୍ୱାରୀ କରିବା ପାଇଁ ଡି.ପି.ଆଇ ଅଫିସ (ଆଜିର D.H.E.)ର ଡେପୁଟି ଡି.ପି.ଆଇ ଶ୍ରୀ ହରିହର ମିଶ୍ର ଯାଇଥିଲେ ଓ ଗୋଟି ଗୋଟି କରି ସମସ୍ତ କାଗଜ ଯଥା, ମୋ ଛୁଟି (ଅନୁପସ୍ଥିତି ସମୟରେ) କେବଳ ୨ଟି ଚିଠି ଆସିଥିବା ଓ ମୁଁ ଠିକ୍ ସମୟରେ ମୋର ଛୁଟି ଦରଖାସ୍ତ ଦେଇଥିବା ଦେଖିଥିଲେ ଏବଂ ତା ଫଳରେ ମୋର ୮ ଦିନର ଦରମା ବନ୍ଦ, ବଦଳି ଓ ସସପେଣ୍ଡ ବା ନିଲମ୍ବନ କରିବା ଭଳି ୩-୩ ପ୍ରକାର ଦଣ୍ଡରେ ଦଣ୍ଡିତ କରାଯାଇଥିଲା । ଯେଉଁଥି ପାଇଁ ମତେ ଦୀର୍ଘ ଦଶବର୍ଷ କାଗଜ ଯୁଦ୍ଧ କରିବାକୁ ପଡ଼ିଥିଲା ଓ ଶେଷରେ ମୁଖ୍ୟ ସଚିବ, ଓଡ଼ିଶା ସରକାରଙ୍କର ଶ୍ରୀ ଜ୍ଞାନ ଚାନ୍ଦ ଓଡ଼ିଶା ସରକାର କିପରି ଚାଲିଛି ତାହା ବୁଝାଇ ଦେଇଥିଲେ ଓ ନିଜକୁ ଚିନ୍ତାଶୂନ୍ୟ ରହିବାକୁ ଉପଦେଶ ଦେଇଥିବାରୁ ମୁଁ ସେ କାଗଜ ଯୁଦ୍ଧରୁ ଅପସରି ଯାଇଥିଲି ।

୧. ମୋର ୮.୬.୭୫ରୁ ୧୫.୬.୭୫ ଅନୁପସ୍ଥିତ ଥିଲି ୯.୬.୭୫ରେ ସସପେଣ୍ଡ୍ କରାଗଲା ।

୨. ସେନ୍‌ସ୍ୟୁର ଦିଆଗଲା ୮-୬ରୁ ୧୫-୬ ଅଫିସରଙ୍କ ବିନା Sanction (ଅନୁମତି ବିନା) ଅନୁପସ୍ଥିତ ରହିବା ଓ ଯିବା ପୂର୍ବରୁ ହେଣ୍ଡି-ଟେକିଙ୍ଗ ନ କରିଥିବାରୁ ।

୩. ୮-୬ରୁ ୧୫-୬ ଇ.ଓ.ଲ ବା Extra Ordinary Leave ଯାହାକି ବିନା ଦରମାରେ ।

ଓ ମୋ ସର୍ଭିସ ରେକର୍ଡ, ମୋ ସାଙ୍ଗରେ, ମୁଦଦିଆ ଲଫାପାରେ ଆଣି ଆସିଥିଲି - ତେଣୁ ପ୍ରଥମରୁ ହିଁ ମୋ ଉପରେ, ସେଠିକାର ଷ୍ଟାଫ ଟିକିଏ ମନ ଉଣା କରିଥିଲେ । ଏବଂ ସେତେବେଳେ ବଡ଼ ବାବୁ ଶ୍ୟାମ ସୁନ୍ଦର ମହାପାତ୍ର ହେଡକ୍ଲର୍କ ମତେ ଭାରିଭଲ ପାଉଥିଲେ, କାରଣ ମୋ ଡାକନାମ କ'ଣ ବୋଲି ପଚାରିଥିଲେ, ତାଙ୍କ ବଡ଼ ପୁଅର ନାମ 'ବୁଲୁ'

ମୋ ନା ସହିତ ମିଶିଯାଉଥିବାରୁ ମତେ ପୁଅ ଭଳି ସ୍ନେହ କରୁଥିଲେ । ସେ ଅଳ୍ପଦିନ ପାଇଁ ହେଉ ପଛେ ।

ସେ ସମୟରେ, ପଦାତିକ ବାହିନୀର କର୍ମଚାରୀମାନେ ସେତେ ଶିକ୍ଷିତ ନଥିଲେ । ଏପରିକି ସୁବେଦାର ମେଜର ରେଙ୍କର ଜେସିଓ (ଜୁନିଅର କମିସନଡ୍ ଅଫିସର) ମାନେ ମଧ୍ୟ କେବଳ ତାଙ୍କର ଦସ୍ତଖତ ଛଡ଼ା; ଖଣ୍ଡେ ଚିଠି ଲେଖିବା ମଧ୍ୟ ତାଙ୍କ ପକ୍ଷେ କଷ୍ଟକର ଥିଲା - ତେଣୁ ବାବୁ (Cleark)ମାନେ ତାଙ୍କର ଭାଗ୍ୟ ବିଧାତା - ତେବେ ଦୀର୍ଘ କାଳର ଅଭିଜ୍ଞତା ହିଁ ସେମାନଙ୍କ କାର୍ଯ୍ୟକୁ ସୁଗମ କରିଥାଏ । ଏପରିକି ନୀତି-ନିୟମ ବିଷୟରେ ମଧ୍ୟ ସେମାନଙ୍କର ଜ୍ଞାନ ଯଥେଷ୍ଟ ଥାଏ । କିଛି କେଉଁଠି ଭୁଲ ଭଟକା ହେଲେ, ସେମାନେ ମଧ୍ୟ ନିଜର ମତ ପ୍ରକାଶ କରିଥାନ୍ତି ଏବଂ ତାର ଯଥାର୍ଥତାର ପ୍ରମାଣ ମଧ୍ୟ ଦେଇଥାନ୍ତି । ତେବେ ବାବୁମାନଙ୍କୁ ସେମାନେ ଯଥେଷ୍ଟ ସମ୍ମାନ ଦେଇଥାନ୍ତି । କଟକ ଗ୍ରୁପ୍‌ରେ ଖରାବେଳ ଜଳଖିଆଟା ମଧ୍ୟ ବଡ଼ବାବୁଙ୍କ ଆଡୁ ଆସିଯାଉଥିଲା । ସେ ତାଙ୍କର କାର୍ଯ୍ୟ ପ୍ରଣାଳୀ ପାଇଁ ସମସ୍ତଙ୍କର ପ୍ରିୟ ପାତ୍ର । ହେଲେ ମୁଁ ମୋର ପ୍ରକୃତି ପାଇଁ ତାହା ତିଷ୍ଟି ରହିପାରିଲା ନାହିଁ । ଗ୍ରୁପ ଅଫିସର ବଡ଼ବାବୁ ହିଁ, ସବୁକାମ କରନ୍ତି କହିଲେ, ଅତ୍ୟୁକ୍ତି ହେବ ନାହିଁ । ଆମ ସାଙ୍ଗରେ ଏସ୍.ମହାନ୍ତି ବୋଲି ଜଣେ ମହିଳା କିରାଣୀ ଥାନ୍ତି । ସେ ତାଙ୍କର ସାହାଯ୍ୟକାରିଣୀ । ଅନ୍ୟ କିରାଣିମାନେ ଚିଠି ଫାଇଲରେ ଗୁନ୍ଥି, ପୂର୍ବା-ପର ଦର୍ଶାଇ ଫାଇଲଟିକୁ ବଡ଼ବାବୁଙ୍କ ଟେବୁଲ ଉପରେ ରଖି ଦେବାକୁ ହୁଏ : ବଡ଼ବାବୁ ତାଙ୍କର ରେଜିମେଣ୍ଟାଲ୍ ଫଣ୍ଡର ହିସାବ ଖାତା ଠିକ୍ କଲାପରେ, ଅନ୍ୟ ବିଭାଗର ଫାଇଲ୍ ଦେଖନ୍ତି ଓ ସନ୍ଧ୍ୟାପରେ ସେ ଦୁଇଜଣ ରାତିର ୯ ଘଟିକା ପର୍ଯ୍ୟନ୍ତ କାମ କରନ୍ତି ବୋଲି ଶୁଣାଯାଏ । ହେଲେ ଜଣେ ରାତ୍ରି ଜଗୁଆଳି ଓ ଆଉଜଣେ ଝାଡୁଦାର; ଏମାନେ କିନ୍ତୁ ବିଷୟଟାକୁ ବେଶ୍ ବୁଝିଥିଲେ । ବଡ଼ବାବୁଙ୍କ ପିଲାଛୁଆ ଥିଲେ ମଧ୍ୟ ତାଙ୍କର ସ୍ତ୍ରୀ କିଛିଦିନ ପୂର୍ବରୁ ମୃତ୍ୟୁବରଣ କରିସାରିଥିଲେ, ତେଣୁ ବଡ଼ ବାବୁ ପିଲାଙ୍କ କଥା ବୁଝିବା ଠାରୁ ଅଫିସ କଥା ବୁଝିବାକୁ

ବେଶୀ ସମୟ ଦେଉଥିଲେ । ଏବଂ ରାତି ୯ଟା ବେଳେ ରିକ୍ସାରେ ମେଡମ ମହାନ୍ତିଙ୍କୁ ତାଙ୍କ ଘରେ ଛାଡ଼ି, ତାଙ୍କ ସରକାରୀ କ୍ୱାଟରକୁ ଫେରୁଥିଲେ ।

ସେଦିନ ବୋଧେ ସୋମବାର ଥିଲା, ସେଦିନ ୧୦ଟା ବେଳେ ଝାଡୁଦାର ମତେ ଯାହା ଦେଖାଇଲା, ସେଥିରେ ମୁଁ ସ୍ତବ୍ଧ ହୋଇଗଲି ଏବଂ ଯେଉଁଠି ଆମର କର୍ମସ୍ଥଳୀ ଏବଂ ଲକ୍ଷ୍ମୀଙ୍କ ନିବାସ, ସେଠାରେ ଏପରି ଅନୀତିକୁ ବରଦାସ୍ତ କରିବା ସପକ୍ଷରେ ମୁଁ ନଥିଲି ଏବଂ ସେଗୁଡ଼ିକୁ ମୁଁ ବଡ଼ ବାବୁଙ୍କୁ ଦେଖାଇ, ପ୍ରତିରୋଧ କଲି ଯାହାଫଳରେ ସେହି ଦିନଠାରୁ ମୋ ଟେବୁଲ୍ ଅନ୍ୟରୁମକୁ ସ୍ଥାନାନ୍ତର ହୋଇଗଲା । ମୋର କିନ୍ତୁ କାର୍ଯ୍ୟ ପ୍ରଣାଳୀ ଅଲଗା । ମୋର ଡକେଟିଂ କରିବା ସଙ୍ଗେ ସଙ୍ଗେ, ଚିଠି କରି ମୁଁ ଫାଇଲ୍ ପଠାଏ ଓ ତା ଉପରେ ବଡ଼ବାବୁ ଦସ୍ତଖତ୍ ନକରି ସିଧା ଗ୍ରୁପ କମାଣ୍ଡରଙ୍କ ପାଖକୁ ପଠାଇ ଦିଅନ୍ତି ଓ ତା ଦସ୍ତଖତ୍ ହେଲାପରେ, ପୁଣି ସେଇରାସ୍ତା ଦେଇ ମୋ ପାଖକୁ ଫେରିଆସେ । ଯଦି କିଛି ଅଧିକା ଲେଖିବାକୁ ଥାଏ; ତେବେ ତାହା ପ୍ରଶାସନିକ ଅଧିକାରୀ ବା ଏଡମ୍ ଅପିସଙ୍କ ଜରିଆରେ ଫେରେ ଏବଂ ମତେ ହିଁ ତାକୁ ମୁଣ୍ଡି ମାରିବାକୁ ପଡ଼ିଥାଏ । କାରଣ ସବୁ କ୍ଷେତ୍ରରେ, ସତ କହି ଚାକିରିକୁ ସୁରୁଖୁରୁରେ ବଞ୍ଚାଇ ହେବ ନାହିଁ । ତେଣୁ କିଛିମାତ୍ରାରେ; ମାନେ ୨କୁ ୪ କରି ରିପୋର୍ଟ ବା ପ୍ରତିବେଦନ (ବିବୃତି) ଉପର ଅଫିସକୁ ପଠାଇବାକୁ ହୁଏ । ତେଣୁ ତାକୁ ବଡ଼ବାବୁ ଚତୁରତାର ସହିତ ମୋର କୌଣସି ଫାଇଲ୍ ବା ଚିଠି ଉପରେ ତାଙ୍କର ଦସ୍ତଖତ୍ ନଥାଏ ।

ବଡ଼ବାବୁଙ୍କ ହାତରେ ଗୋଟାଏ କେସବୁକ ବା ହିସାବ ଖାତା ଥାଏ, ତାହା ରେଜିମେଣ୍ଟାଲ ନାମରେ ନାମିତ, ସେଥିରେ ଯେତେ ଛୋଟ ବଡ଼ ଖର୍ଚ୍ଚ ହୁଏ । ତାହା ଲିପିବଦ୍ଧ କରାଯାଏ ଓ ଖର୍ଚ୍ଚ ହୁଏ । କିନ୍ତୁ ତା କେବଳ ସେହିଁ ପ୍ରତିରକ୍ଷା ବିଭାଗର ଅଫିସର ମାନେ ହିଁ ଅଡିଟ୍ କରିଥାନ୍ତି : କିଛିମାସ ପରେ ପୁଣି ଗୋଟାଏ ଘଟଣା ଘଟିଲା । ଯାହାକି ଏକ ଧର୍ତ୍ତବ୍ୟ ଅପରାଧ ।

ଦିନେ ଭୁଲରେ ଗ୍ରୁପ କମାଣ୍ଡରଙ୍କ ଟେବୁଲ୍ ଉପରୁ କେସ୍‌ବୁକ୍‌ଟିକୁ ବଡ଼ବାବୁଙ୍କୁ ଦେଇଦେବାକୁ; ଗ୍ରୁପ କମାଣ୍ଡର କହିବାରୁ ମୋ ଆଖିରେ ପଡ଼ିଲା ଗୋଟାଏ ଏଣ୍ଟ୍ରି। 'ସେଥିରେ ସମାଜ ଅଫିସ' ଟ. ୨୦,୦୦୦ଙ୍କା ଏନ୍.ସି.ସି. କ୍ୟାଡେଟଙ୍କ ଓ୍ୱେଲ୍‌ଫେର ବା କଲ୍ୟାଣ ପାଇ ଖର୍ଚ୍ଚ ହେବା କଥା କିନ୍ତୁ ପ୍ରାୟ ସମସ୍ତ ଖର୍ଚ୍ଚ ହୋଇଥିଲା ପେଟ୍ରୋଲ୍ ନଟୁବା ଗାଡ଼ିର (୪ଚକିଆ) ନଟ୍-ବୋଲ୍ଟ ଓ ଅନ୍ୟାନ୍ୟ ଖର୍ଚ୍ଚ ପାଇଁ, ତା ମଧ୍ଧ ଅଧିକା ଦରରେ। ଜଣେ ଡ୍ରାଇଭରଙ୍କ ପାଖରୁ ବୁଝିଲି, ସେ ପ୍ରକୃତ ପଇସାର ରିସିଦ ଆଣନ୍ତି ଓ ତା ସଙ୍ଗରେ ବ୍ଲାଙ୍କ ରସିଦ ପେପର ମଧ୍ୟ ଖଣ୍ଡେ ଦୁଇଖଣ୍ଡ ଆଣିବାକୁ ବଡ଼ବାବୁ କହିଥାନ୍ତି ଓ ସେମାନେ ତାହା କରିଥାନ୍ତି। ଜଳଖିଆ ହିସାବଟା ଏଇଥିରେ ମିଶିଯାଏ।

ଝିମିଟି ଖେଳରୁ ମହାଭାରତ ହେଲାଭଳି, ମୋ କଥା କାନକୁ କାନ ହୋଇ ବଡ଼ବାବୁଙ୍କ ପାଖକୁ ଗଲା ଏବଂ ତାପର ରବିବାର ବଡ଼ବାବୁ ଅଫିସ ଫିଟାଇ, ସେ କେସ୍‌ବୁକ୍‌ର ପୁରୁଣା ରସିଦ ଓ ବହି ପୋଡ଼ି ପକାଇଥିଲେ। ସେଥିରୁ ମେଞ୍ଚାଏ ରସିଦ (ବିଲ୍), ରାତ୍ରି ଜଗୁଆଳି ମତେ ଦେଇଥିଲା ଓ ମୁଁ ମଧ୍ୟ ତାକୁ ବହୁବର୍ଷ ପର୍ଯ୍ୟନ୍ତ ମୋ ପାଖରେ ସାଇତି ରଖିଥିଲି, କିନ୍ତୁ କଟକରୁ ଭୁବନେଶ୍ୱର ବଦଳି ବେଳେ ତାକୁ ପୋଡ଼ି ଦେଇଥିଲି। ଏନ୍.ସି.ସି. ଗ୍ରୁପ୍‌ରେ ଥିଲାବେଳେ ଜଣେ ଏଡମ (ଏଡ୍‌ମିନିସ୍‌ଟ୍ରେଟିଭ) ଅଫିସର ଥିଲେ ତାଙ୍କ ଦେହରେ ପ୍ରାୟ ୪୦ ରୁ ୫୦କଟା ଦାଗ। ମୁଣ୍ଡରେ ବି, ସବୁ ଗୁଳିମାଡ଼। ୧୯୬୫ମସିହା ଭାରତ-ପାକିସ୍ଥାନ ଓ୍ୱାରରେ ସେ ବିଶେଷ ଭାବେ କ୍ଷତାକ୍ତ। ଗୋଟିଏ ଚିଠି ପଢ଼ିଲେ ଆଖିରୁ ପାଣି ବାହାରେ ତେଣୁ; ଯେତେଟା ସମ୍ଭବ ମୁଁ ସାହାଯ୍ୟ କରେ। ତାଙ୍କ ପାଖରେ ବସି ଚିଠିଗୁଡ଼ିକ ପଢ଼ି ଦିଏ। ସିଏ ଖାଲି ସେଗୁଡ଼ିକରେ ଦସ୍ତଖତ କରି ବିଭାଗୀୟ କିରାଣିଙ୍କୁ ବିହିତ କାର୍ଯ୍ୟାନୁଷ୍ଠାନ ପାଇଁ, ଦୁଇଧାଡ଼ି ଲେଖି, ଆଖି ପୋଛନ୍ତି। ଭାରି ଦୁଃଖ ଲାଗେ ତାଙ୍କୁ ଦେଖି, ସେ ପ୍ରାୟ ବର୍ଷେ ପରେ ବଦଳି ହୋଇଗଲେ ଓ ତାଙ୍କ ବଦଳରେ ଜଣେ ଶ୍ରୀଓମ୍ ନାମକ ଅଫିସର ଆସି ଜଏନ୍ କଲେ।

ଠିକ୍ ମନେ ପଡୁନି, ସିଏ ଥିଲାବେଳେ ଜଣେ ଗ୍ରୁପ୍ କମାଣ୍ଡର ଥିଲେ। ତାଙ୍କ ନାମ 'ଶୋଭାକର'। ସେ ବଡ଼ କଡ଼ା (Strict) ଅଫିସର ଥିଲେ। ପିଲାମାନଙ୍କ ଟ୍ରେନିଂ ଓ ତାଙ୍କର ପୋଷାକ ଉପରେ ସେ ବେଶୀ ଧ୍ୟାନ ଦେଉଥିଲେ। କୌଣସି ଟ୍ରେନିଂ ବା ପ୍ରଶିକ୍ଷଣ ପାଇଁ ରାଜ୍ୟ ବାହାରକୁ ଯିବାକୁ ଥିଲେ ନିଜେ ସେମାନଙ୍କର ଡ୍ରିଲ୍ ବା ପ୍ୟାରେଡ ଦେଖୁଥିଲେ ଓ ସେମାନେ ନେଉଥିବା ପୋଷାକ ଓ ବେଡିଂ ପ୍ରତି ମଧ୍ୟ ବିଶେଷ ଧ୍ୟାନ ଦେଉଥିଲେ - ଏପରିକି କିଛି ଯଦି ପିଲା ଆଣିନଥାନ୍ତି ତେବେ ସେ ନିଜେ ପକେଟରୁ ଖର୍ଚ୍ଚ କରି ପିଲାଙ୍କୁ ଯୋଗାଇଥାନ୍ତି। ସିଏ ବହୁବାର କହିବାର ମୁଁ ଶୁଣିଛି। ପିଲା ଓଡ଼ିଶାକୁ ପ୍ରତିନିଧିତ୍ୱ କରୁଛନ୍ତି ଏଣୁ ଏହା ଓଡ଼ିଶାର ଗର୍ବ ତାଙ୍କୁ ଓଡ଼ିଶାର ସମସ୍ତ ଭୂଗୋଳ, ଇତିହାସ ଓ ଐତିହ୍ୟ ବିଷୟରେ ଧାରଣା ଥିବା ଦରକାର।

ତାଙ୍କ ସମୟରେ ମୋର ପ୍ରତିପତି ଟିକିଏ ଜୋର ଥିଲା କାରଣ ପ୍ରଶିକ୍ଷଣ ବେଳେ ମୁଁ ମଧ୍ୟ ମଝିରେ ମଝିରେ ବନ୍ଧୁକ ଚାଳନା ଓ ଡ୍ରିଲ୍ ବିଷୟରେ ପିଲାଙ୍କୁ କହିଲାବେଳେ ସେ ଖୁସି ହୁଅନ୍ତି ଓ ମୋ ସହିତ ଭଲ ମନ୍ଦ ଗପ କରନ୍ତି।

ସେଦିନ ଥିଲା ତାଙ୍କର ଶେଷ ଦିନ। ସେ ପ୍ରାୟ କୁହନ୍ତି, ମୁଁ ହେଉଛି ଶେଷ ଓ ପ୍ରଥମ 'ଶୋଭାକର' ମୋ ପୂର୍ବରୁ କେହି ନଥିଲେ କି ମୋ ପରେ କେହି ରହିବେ ନାହିଁ। ସେଦିନ ନିଜ ଗାଡ଼ିରେ ଦୁଇ ପିଅ-ଝିଅଙ୍କୁ ନେଇ ସେ କଲିକତା ଅଭିମୁଖେ ଯାଉଥିଲେ - କିଛିଦିନ ଛୁଟି କାଟିବାର ଆଶାନେଇ। ଓଡ଼ିଶା ମାଟି ଛାଡ଼ିବା ପରେ କଲିକତାରେ ପହଁଞ୍ଚିବାକୁ ଅଳ୍ପ ସମୟ ଥିଲା - ତାଙ୍କର କାରଟି ଗୋଟାଏ ବଡ଼ ଟ୍ରଲି ଭିତରେ ପଶିଗଲା ଓ ସେ ଓ ତାଙ୍କ ସ୍ତ୍ରୀ ସେଇ ସ୍ଥଳରେ ହିଁ ମୃତ୍ୟୁବରଣ କଲେ। ପିଲା ଦୁଇଜଣ ବହୁଦିନ ହସ୍‌ପିଟାଲ୍‌ରେ ରହି ଶେଷରେ ଆରୋଗ୍ୟ ହୋଇଥିଲେ ବୋଲି, ଶୁଣିବାକୁ ପାଇଥିଲି।

ତାଙ୍କ ପରେ ଏଡମ ଅଫିସର ଶ୍ରୀ ଓମ୍ ଓ ଗ୍ରୁପ୍ କମାଣ୍ଡର ଗିଲ ଆସି ପହଁଞ୍ଚିଲେ। କାମକୁ ଠିକ୍ ଭାବେ ପରିଚାଳନା କରିବାକୁ; ମୋର ସମସ୍ତ ଫାଇଲ୍ ଏଡମ୍ ଅଫିସରଙ୍କ ପାଖଦେଇ ଗ୍ରୁପ୍ କମାଣ୍ଡରଙ୍କ ନିକଟକୁ ଯିବାର ଲିଖିତ ନିର୍ଦ୍ଦେଶ ପାଇଲି। ତେଣୁ ମୋର ସମସ୍ତ ଚିଠି ଏଡମ୍ ଅଫିସର ଶ୍ରୀଓମ୍‌ଙ୍କ ଟେବୁଲ୍ ଉପରକୁ ପଠାଇବାକୁ ପଡୁଥିଲା।

ସବୁ ୟୁନିଟ୍ (ପ୍ରାୟ ୭ଟି ୟୁନଟ୍, ଯଥା ବାଟାଲିଅନ୍, କମ୍ପୋଟେକିନିକାଲ୍, ବ୍ୟାଟେରୀ, ମେଡିକାଲ୍, ନାଭାଲ୍, ଢେଙ୍କାନାଳ ଓ ଭଦ୍ରକର ୨ଟି ବାଟାଲିଅନ୍)ଗୁଡ଼ିକର ରିପୋର୍ଟ ଆସିଲେ ତାକୁ Compile ବା ସଙ୍କଳନ କରି ଏନ୍.ସି.ସି. ଡାଇରେକ୍ଟର ଅଫିସକୁ ପଠାଇବାକୁ ହୁଏ। ତେଣୁ ସାଧାରଣତଃ ଏ ସମସ୍ତ ଅଫିସରୁ ଠିକ୍ ସମୟରେ ରିପୋର୍ଟ ଆସି ପହଁଞ୍ଚେ ନାହିଁ। ତେଣୁ ସଦାବେଳେ ଏଡମ୍ ଅଫିସର ମୋ ଉପରେ ଗର-ଗର : ସେ ୟୁନିଟ୍ କିରାଣିମାନେ ମଧ୍ୟ କ'ଣ କରିବେ, କାହା ପାଖରେ ୧୫ ତ କାହା ପାଖରେ ୩୦ଟି ଲେଖାଏ କଲେଜ ଓ ସ୍କୁଲଥାଏ। ସମସ୍ତେ ଗୋଟିଏ ଗୋଟିଏ କଲେଜ ଓ ୧୫ ରୁ ୩୦ଟି ସ୍କୁଲର ରିପୋର୍ଟ ଆଣି ତାକୁ ସଙ୍କଳନକ କରି ପଠେଇବାକୁ ଡେରି ହୁଏ। ତେଣୁ କଟକରେ ଥିବା ୬ଟି ୟୁନିଟ୍ (ଅଫିସ)ର କିରାଣିମାନଙ୍କୁ ଡାକି ଲାଇନ୍‌ରେ ଛିଡ଼ା କରି ଗୁଡ଼ାଏ ଭାଷଣ ଦେବା ସଙ୍ଗେ ସଙ୍ଗେ, ଶାଳା, ବେହନ ଚୋଦ, ମାଦ୍ରୁର ଚୋଦ ଭଳି ଗାଳି ମଧ୍ୟ ବର୍ଷଣ କରନ୍ତି। ମୁଁ ଫାଇଲ୍ ନେଇ ତାଙ୍କ ପାଖରେ ଠିଆ ହୋଇ କେଉଁ ଅଫିସରୁ ଚିଠି ବା ରିପୋର୍ଟ ଆସିଛି ଏବଂ କେଉଁଦିନ ପହଞ୍ଚିଛି ମୋ ପାଖରେ, ତା ଗୋଟି ଗୋଟି କରି କହୁଥାଏ। କିନ୍ତୁ ହଠାତ୍ ଦିନେ କହିଲେ, "ଶାଲା ତୁମ ଲୋଗ ଓଡ଼ିଆ - ସବଐସେ ହୋ କ୍ୟା। କୋଇଶାଲା ସମଝତା ନାହିଁ, ହମକୋ ଉପରସେ ଡଣ୍ଡା ଆତା ହୈ। ମୋ ଦେହକି ସହେ, ସେଦିନ ବହୁ କଷ୍ଟରେ ସବୁଟା ସମ୍ଭରଣ କରିନେଲି; ତାର ମାସକ ପରେ ପୁଣି ସେଇ ପ୍ୟାରେଡ଼। ସେଇଭଳି ଗାଳି, ତେବେ ମୁଁ ଅନ୍ୟକାମ କରୁଛି କହି, ଗୁମ୍‌କୁ ଚାଲି ଆସିଲି। ବାରଣ୍ଡାରେ ଠିଆ କରେଇ ଅନ୍ୟମାନଙ୍କୁ ଗାଳି କରୁଥିବାରୁ ମୁଁ ସବୁ ଶୁଣି ଚୁପ ରହିଥିଲି ସେଦିନ।

ତା' ପରଦିନ ସବୁତକ ରିପୋର୍ଟକୁ Compile କରି ଠିକ୍ ଠାକ୍ କରୁଥାଏ । ଏଡମ୍ ଅଫିସର ମହାଶୟ ଆସି ମୋ ଟେବୁଲ୍ ଉପରେ ବସି ପଡ଼ି, ଗୋଟାଏ ଗୋଡ଼ ମୋ ବସିଥିବା ଚୌକି ଉପରେ ରଖି ମତେ କିଛି କହିବାକୁ ଲାଗିଲେ । ମୋର ସେତେବେଳକୁ ମୁଣ୍ଡକୁ ପିତ୍ତ ଚଢ଼ି ଯାଇଥିଲା, ତାଙ୍କ ଜଙ୍ଘକୁ ମୋ କହୁଣୀର ବେଶ୍ ଗୋଟାଏ ଷ୍ଟ୍ରୋକ୍; ତାପରେ ମରିଗଲି ମରିଗଲି କହି, ଜଙ୍ଘକୁ ଆଉଁସି ଆଉଁସି ସେ ତାଙ୍କ ରୁମକୁ ଚାଲିଗଲେ । ଏପଟେ ଗ୍ରୁପ୍ ଓ ସେପଟେ ନାଭାଲ୍‌ର ଲୋକମାନେ ରୁଣ୍ଡ ହୋଇଗଲେ । ଏ ସମୟରେ ଗୋଟିଏ ଗଳାବାଟ ଦେଇ ଚାଲିଯିବାକୁ କହି, ନାଭାଲ୍ ୟୁନିଟ୍‌ର ସିପମୋଡେଲିଂ ଇନ୍‌ସଟ୍ରାକ୍ଟର କ୍ରିଷ୍ଣାରାଓ ବାବୁ; ତାଙ୍କ ପାଖରେ ଥିବା ଚାବିରେ ଷ୍ଟାଡିଅମ୍‌ର ଗୋଟିଏ ଛୋଟ ଦ୍ୱାର, ଯାହାକି ନାଭାଲ ୟୁନିଟ୍ ଅଫିସ୍ ଆଗରେ ଥିଲା ତାକୁ ଖୋଲିଦେଲେ ଓ ମୁଁ ସେଇବାଟେ ଚାଲିଆସିଲି । ସେତେବେଳେ ମୁଁ ଭୁବନେଶ୍ୱରରୁ ଯିବା-ଆସିବା କରୁଥିଲି ।

ଡିଫେନ୍ସ ଅଫିସରଙ୍କୁ ମାଡ଼, ଏକଥା ଯିଏ ଶୁଣିବ ସିଏ ନିଶ୍ଚୟ ମୋ ବିରୁଦ୍ଧରେ ଯିବ । କାରଣ ମୋତେ ସପୋର୍ଟ କରବା ଭଳି ସାହସ କାହାର ଅଛି ବୋଲି ମୁଁ ବିଶ୍ୱାସ କରିପାରି ନଥିଲି; ତେବେ - ମୁଁ ସେତେବେଳେ ବୋଧେ ଦୀର୍ଘଦିନ ଧରି - ଅଫିସଠାରୁ ଦୂରେଇ ରହିଲି । ପ୍ରାୟ ୧୦୨ ଦିନ ପରେ ଡି.ପି.ଆଇ, ଅଫିସରେ ଜଣେ ଡିଡିପିଆଇ, କଟକ ରେଭେନ୍‌ସା କଲେଜରୁ ଆସି ଜଏନ କରିଥିଲେ । ସିଏ ବୋଧେ ସମସ୍ତ ଘଟଣା ବିଷୟରେ ଅବଗତ ଥିଲେ । କାରଣ ସବୁ ଅଫିସରୁ ପ୍ରାୟ ସବୁଦିନ କିଛିନା କିଛି କାମ ପାଇଁ କଟକରୁ ଷ୍ଟାଫ୍ ଭୁବନେଶ୍ୱର ଯାଆନ୍ତି ।

ଦିନେ ସିଏ ଡକେଇ ପଠେଇଲେ ବୋଧେ ଚିଠି ଦ୍ୱାରା କାରଣ ? ଏ ବାବଦରେ ମୁଁ ବହୁଥର ଚିଠି, ଏପରିକି ଦିଲ୍ଲୀ ଆର୍ମି ହେଡ୍‌କ୍ୱାର୍ଟରକୁ ମଧ୍ୟ ଲେଖି ଜଣାଇଥିଲି । ଅବଶ୍ୟ ମାରିବା ଓ ବାଜିବା ଭିତରେ ଯାହା ଫରକ ଥିଲା ।

ମୁଁ ଡିପିଆଇ ଅଫିସରେ ପହଞ୍ଚି ଯାହା ଘଟଣା ଘଟିଲା ତା, ମଧ୍ୟ ବିଚାର ଯୋଗ୍ୟ । କାରଣ ସେ ପ୍ରଥମେ ମୋତେ ପଚାରିଲେ, ତୁମେ ୩

ମାସ ହେଲା ଅଫିସ ଯାଉନ, ଚଳୁଚ କିପରି ? ମୋ ଉତ୍ତର ଥିଲା, ସାର କିଛି ଜମି ଥିଲା ତାକୁ ବିକ୍ରି କରିଛି, କିନ୍ତୁ କାହାକୁ ହାତ ପାତିନି ଆଉ ସେ ଅଫିସକୁ ଯାଇ, ପୁଣି ଗଣ୍ଡୋଗଳ କରିବାକୁ ଆଉ ଇଚ୍ଛା ନାହିଁ।

ସେ କିନ୍ତୁ ମତେ ଭରସା ଦେଇ କହିଲେ ତୁମେ ଯାଇ ସେଠାରେ ଯଏନ୍ କର। ମୁଁ ଗ୍ରୁପ୍ କମାଣ୍ଡରଙ୍କ ସାଙ୍ଗରେ କଥାବାର୍ତ୍ତା କରିଛି। ତୁମର କାମ ସିଧାସଳଖ ଗ୍ରୁପ୍ କମାଣ୍ଡରଙ୍କ ସହିତ। ଏଡମ୍ ଅଫିସରଙ୍କ ସହିତ ତୁମର କୌଣସି ସମ୍ପର୍କ ରହିବ ନାହିଁ : ଶେଷରେ ତାହା ହିଁ ହେଲା ଓ ମୁଁ କିଛିଦିନ ଗ୍ରୁପ୍‌ରେ କାର୍ଯ୍ୟ କରିବା ପରେ ମୋର ବଦଳି, କଟକ ସ୍ଥିତ ବେଟେରି ଅଫିସକୁ କରାଯାଇଥିଲା ଓ ସେଠାରେ ମୁଁ ଯାହାକୁ ରିଲିଭ କଲି, ସେ ସେଠାରେ ସିନିଅର କ୍ଲର୍କ (ପି.କେ. ତ୍ରିପାଠୀ) ଥିଲେ।

## ପ୍ରଥମ ଓଡ଼ିଶା ଆର୍ଟି-ବେଟେରୀ :

୧୯୭୭ ମସିହା ମେ ୧୧ ତାରିଖରେ କଟକ ବେଟେରୀ ଅଫିରେ ଜଏନ୍ କଲି। କିନ୍ତୁ ଦୁଃଖର କଥା ଯେ ପ୍ରଥମ ଦିନ ହିଁ ଏକ ଅଶୁଭ ଲକ୍ଷଣକୁ ସାମନା କରିବାକୁ ପଡ଼ିଲା। ଠିକ୍ ମନେ ପଡୁନି, ତେବେ ମେଜର ପାଶୱାନ କି କର୍ଣ୍ଣଲ ଏ. କେ ଶର୍ମା ଅଫିସର କମାଣ୍ଡି ଭାବେ କାର୍ଯ୍ୟରତ ଥିଲେ। ମୁଁ ଗ୍ରୁପ୍ ହେ୍ କ୍ୱାର୍ଟରରୁ ଯାଇଥିବାରୁ, ସେମାନଙ୍କୁ ମତେ ଇଣ୍ଟରଭ୍ୟୁ ଦେବାକୁ ପଡ଼ିନଥିଲା। ସିଧା ସଳଖ ଭାବେ କ୍ୱାଟରମାଷ୍ଟର (Q) ବିଭାଗ (Section)ର ଦାୟିତ୍ୱ ନେବାକୁ ଅଫିସର ନିର୍ଦ୍ଦେଶ ଦେଲେ। କାରଣ ସେ ବିଭାଗ ସମ୍ଭାଳୁଥିବା କିରାଣି ପି.କେ. ତ୍ରିପାଠୀଙ୍କୁ ୩ୟ ଓଡ଼ିଶା ମେଡିକାଲ୍ ୟୁନିଟ୍ କଟକକୁ ବଦଳି କରାଯାଇଥିଲା। ତାଙ୍କଠାରୁ ମୋତେ ଗୋଟି ଗୋଟି କରି ଫାଇଲ୍ ଓ ଲେଜରଖାତା (ଯେଉଁ ଖାତାରେ ସମସ୍ତ ଆସବାବ ପତ୍ର)ର ହିସାବ ଲେଖାଯିବାର ବ୍ୟବସ୍ଥା ଥାଏ। ଯଥା କାଗଜ କଲମଠାରୁ ଯୁଦ୍ଧରେ ବ୍ୟବହୃତ ହେଉଥିବା ଟ୍ରକ ଓ ତା'ର ଆନୁସଙ୍ଗିକ ସମସ୍ତ ଉପକରଣ। ଏଗୁଡ଼ିକ ପ୍ରାୟ କମ ବ୍ୟବହାର କରାଯାଏ କାରଣ, ଏଗୁଡ଼ିକ ମାଇଲିଏ ବାଟ ଯିବାକୁ ଅତି କମ୍‌ରେ ୪ ରୁ ୬ ଲିଟର ପେଟ୍ରୋଲ୍ ଦରକାର ପଡ଼େ।

ଏଥିପାଇଁ ସିନିଅର୍ ଡ୍ରାଇଭରମାନେ ପ୍ରଶିକ୍ଷଣ ନେଇ ଚଳାଇବାକୁ ସକ୍ଷମ ହୋଇଥାନ୍ତି। କାରଣ, ଏହାର ଡ୍ରାଇଭର ରାସ୍ତାକୁ ଦେଖିବାର ସୁଯୋଗ ନଥାଏ। କେବଳ ଗାଡ଼ି ଭିତରେ ଥିବା ସୈନିକ ହିଁ ଡ୍ରାଇଭରକୁ ରାସ୍ତା ଦେଖାଇଥାଏ।

ହଁ, ସେ ଅଫିସରଗୁଡ଼ାଏ ଲେଜର। ତେଣୁ ମୁଁ ମଧ୍ୟ ସେ ସୂଚୀ ଦେଖି ଦାୟିତ୍ୱ ନେବାକୁ ଇଚ୍ଛା ପ୍ରକାଶ କରିଥିଲି। କିନ୍ତୁ ହଠାତ୍ ତ୍ରିପାଠୀ ବାବୁ ରକ୍ତ ବାନ୍ତି କଲେ। ସମୟ ଠିକ୍ ୧ଟା ରୁ ୨ଟା ବେଳ ହେବ। ତେଣୁ ମୁଁ ଆଉ ବେଶି କିଛି ନ କହି, କେବଳ ଖାତାଗୁଡ଼ିକ ଗଣି ନେଇ, ଦସ୍ତଖତ କରି, ତାଙ୍କୁ ବିଦା କରି ଦେଲି। ଆଶା କରିଥିଲି, ସିଏ ବୋଧେ ଭଲ (ସୁସ୍ଥ) ହେଲେ ନିଜେ ଆସି ସୁବିଧା-ଅସୁବିଧା ଓ ବାକିଆ କାମ ବୁଝାଇ ଦେଇଯିବେ। କିନ୍ତୁ ମୋ ଥିବା ଭିତରେ ସିଏ ଆସିଲେ ନାହିଁ କି ମୁଁ ମଧ୍ୟ ଜୋର୍ ଦେଇନଥିଲି, ସେ ବିଷୟରେ। ସେ ଅଫିସରେ ମୋ ଆଗରୁ ଜଣେ ଏକାଉଣ୍ଟାଣ୍ଟ୍ ଅଧାରୁ ଅଫିସ ଛାଡ଼ି ଚାଲିଯାଇଥିଲେ। ସେ ଥିଲେ ୟୁ ସି ମହାନ୍ତି। ତାଙ୍କୁ ସାହାଯ୍ୟ କରିବା ପାଇଁ ଜଣେ ଜୁନିଅର କିରାଣି ମଧ୍ୟ ଅଫିସ ଛାଡ଼ି ଚାଲିଯାଇଥିଲେ। ତାଙ୍କର ସମସ୍ତ କ୍ୟାମ୍ପ ଓ କିଛି ଗୋପନ ଦସ୍ତାବିଜକୁ ଗୋଟିଏ କଳା ରଙ୍ଗର ଟ୍ରଙ୍କରେ ଭର୍ତ୍ତି କରି। କାହାକୁ କାର୍ଯ୍ୟଭାର ନଦେଇ। ଯାହାକି ପରେ କିଛି କାରଣ ପାଇଁ ଭିଜିଲେନ୍ସ ଡିପାର୍ଟମେଣ୍ଟ ଖୋଳତାଡ଼ କରିଥିଲା ଏବଂ ମୁଁ ତାଙ୍କୁ ସାହାଯ୍ୟ କରୁନି ତେଣୁ ତାଙ୍କର ଅନୁସନ୍ଧାନରେ ବ୍ୟାଘାତ ସୃଷ୍ଟି ହେଉଚି ବୋଲି ଡାଇରେକ୍ଟର ଉଚ୍ଚଶିକ୍ଷା ବିଭାଗକୁ ଜଣାଇଥିଲେ ଏବଂ ଡାଇରେକ୍ଟର ଅଫିସ ମତେ କୈଫିୟତ ମାଗିବାରୁ, ମୁଁ ମଧ୍ୟ ୨ ଧାଡ଼ିରେ ତା'ର ଉତ୍ତର ଦେଇଥିଲି ଯେ, ବକ୍ସ ଚାବି ଭାଙ୍ଗିବା କାର୍ଯ୍ୟ କଲେକ୍ଟର ଓ ଡାଇରେକ୍ଟରଙ୍କ କାର୍ଯ୍ୟ। ମୋର କିମ୍ବା ଏ ଅଫିସର କୌଣସି ଅଫିସରଙ୍କର ଚାବି ଭାଙ୍ଗିବା ନିୟମ ନାହିଁ।

ଏ ଅଫିସରେ ମୋର ରହିଥିବା ସମୟରେ ଆହୁରି ଗୋଟିଏ ଘଟଣା ଘଟିଥିଲା। ତା ହେଲା ସେ ସମୟରେ ଶୀତ କପଡ଼ା ପ୍ରାୟ ସବୁ ଅଫିସ

ମଗାଇଥାନ୍ତି । ତାଙ୍କର ମିଲିଟାରି କର୍ମଚାରୀଙ୍କ ପାଇଁ, ଯାହାକି ବିକ୍ରି ହୁଏ ଓ ତା' ଡିଫେନ୍ସ ଫଣ୍ଡ ଏକାଉଣ୍ଟରେ ଡିପୋଜିଟ (ଜମା) କରାଯାଇଥାଏ । କିନ୍ତୁ ଜଣେ କେପଟେନ, ଯିଏକି ଅଫିସର କମାଣ୍ଡିଭାବେ, ମୋ ବହୁତ ପୂର୍ବରୁ, କାର୍ଯ୍ୟଦାୟିତ୍ୱ ତୁଲାଉଥିଲେ, ସେ ଟ. ୧୫୦.୦୦ କିମ୍ବା ଟ. ୧୮୦.୦୦ଟଙ୍କା ପ୍ରତିରକ୍ଷା ବିଭାଗର ଏକାଉଣ୍ଟକୁ ଟ୍ରେଜେରୀ ଚାଲାନ ନ ଭରି, ବଦଳି ହୋଇ ଚାଲି ଯାଇଥିଲେ ଓ ସେଥିପାଇଁ ପ୍ରାୟ ୫୦ କି ଶହେ ଟେଲିଗ୍ରାମ ତାଙ୍କ ପେରେଣ୍ଟ ୟୁନିଟ୍ ବା ନିଜର ମୂଳ ଅଫିସ (ଆର୍ଟି- ବେଟେରୀ ବ୍ରିଗେଡ୍‌କୁ ପଠାଯାଇଥିଲେ ମଧ୍ୟ କୌଣସି ଉତ୍ତର ଅଫିସ ପାଇନଥିଲା ଓ ମୁଁ ମଧ୍ୟ ୨-୩ଟି ଟେଲିଗ୍ରାମ ଦେଲାପରେ; ପୁଣି ଅଡିଟ୍ ପାର୍ଟି ଆସି ସେହି ଆପତ୍ତି ଦୋହରାଇଲେ ଏବଂ ମୁଁ ମଧ୍ୟ ତାଙ୍କ ଆପତ୍ତି ଅନୁସାରେ ଗୋଟାଏ ଟେଲିଗ୍ରାମ, ଆମୂଳଚୂଳ ଲେଖି ପଠାଇଲି, ଯାହାକି ପୋଷ୍ଟାଲକୁ ୧୮୦ଟଙ୍କାରୁ ଉର୍ଦ୍ଧ ଦେବାକୁ ପଡ଼ିଲା । ସେ ସମୟରେ ପୋଷ୍ଟାଲ୍ ଡିପାର୍ଟମେଣ୍ଟ- କ୍ରେଡିଟ୍ (ଜମା-ବାକି) ରୂପେ, ସିଧା ସଳଖ କେନ୍ଦ୍ରୀୟ ଅଫିସ (PAY)ରୁ ପ୍ରତିପୂରଣ ବା reimburse କରି ନେଇଥାଏ ।

ଏହାକୁ ଚିନ୍ତାକରି, ମୁଁ ନୂଆ ହୋଇ ଆସିଥିବା କର୍ଣ୍ଣେଲ ଶର୍ମାଙ୍କୁ କହି ତାକୁ ଲସ ଷ୍ଟେଟମେଣ୍ଟ - କ୍ଷତିପୂରଣ ପାଇଁ ଥିବା ନିୟମ ଅନୁସାରେ, କାମ କରି ସେହି ଆପତ୍ତିରୁ ଅଫିସକୁ ମୁକ୍ତ କରିଥିଲି ଏବଂ ସେ ଯେଉଁ ଅଫିସରଙ୍କ ଅମଳରେ ତା' ଘଟିଥିଲା ସେ ଥିଲେ ଆମ ଓଡ଼ିଆ ଅଫିସର କେପିଡି ଧଳସାମନ୍ତ । ସେ ବହୁବାର ଓଡ଼ିଶା ଆସିଛନ୍ତି ଓ ମୁଁ ସୈନିକ ସ୍କୁଲରେ ଥିବା ସମୟରେ ୨୦୦୦ରୁ ୨୦୦୩ ଭିତରେ ମଧ୍ୟ ଆସିଥିଲେ; କିନ୍ତୁ ତାଙ୍କୁ ମୁଁ କେବଳ ଅଗଷ୍ଟ ୨୦୧୭ରେ ଜାଣି ପାରିଲି ଯେ ସେ ପୁରୀର ଓ ଲେଫଟନାଣ୍ଟ ଜେନେରେଲ ପୋଷ୍ଟରୁ ଅବସର ଗ୍ରହଣ କରି ଆସିଛନ୍ତି ।

କେବଳ ସେତିକି ନୁହଁ - ନୂଆ-ନୂଆ ଘଟଣା ମଧ୍ୟ ଘଟିଥିଲା ସେହି ସମୟରେ । କିଛି କଥା ନଥାଇ ହଠାତ୍ କଥା ଉଠିଲା ଯେ ବେଟେରୀ ଅଫିସ, ବ୍ରିଟିଶ ଅମଳରେ ଥିବା ଗୁମୁଟି ବା ଗମ୍ବୁଜ ଯାହାକି ଏବେ ସିଟି

କଲେଜ ହୋଇଛି । ସେଠିକୁ ଉଠିଯିବ ତେଣୁ, କଟକ ଗ୍ରୁପକୁ ଓଡ଼ିଶା ସରକାର ଏନ୍.ସି.ସି. ଶାଖା ଡି ପି ଆଇ ଅଫିସ, ୨୦ ହଜାର (କୋଡ଼ିଏ) ହଜାର ଟଙ୍କା ଏଲଟମେଣ୍ଟ ଦେଇ, ବେଟେରୀ ଅଫିସକୁ କୁହାଗଲା ଯେ ବେଟେରୀ ଅଫିସ ତା'ର ଆବଶ୍ୟକ କାର୍ଯ୍ୟ କରିବ। ଯେପରିକି ସେଠାରେ ଅଫିସ କରିହେବ। ମୁଁ କିନ୍ତୁ ସିଧା ସଳଖ ମନା କରିଦେଲି ଆମ ଅଫିସରଙ୍କୁ; କାରଣ ଯେଉଁ ଗୁମଟି ଗୁଡ଼ିକରେ ଗୋଳାବାରୁଦ ରଖିବା ପାଇଁ ନିର୍ମିତ ହୋଇଥିଲା; ସେଠି ଅଫିସ କିଭଳି ଭାବେ ହୋଇ ପାରିବ। ୨ୟରେ ଟଙ୍କା ରଖିବ ଗ୍ରୁପ ହେଡକ୍ୱାଟର ଆଉ କାମ କରିବ ବେଟେରୀ ଅଫିସ ଓ ଅଡିଟର ସମ୍ମୁଖୀନ ମଧ ହେବ ବେଟେରୀ ଅଫିସ । ଖର୍ଚ୍ଚ କରିବାକୁ ବେଟେରୀ ଅଫିସ ପାଖରେ ବି ସେତେ ପଇସା ନାହିଁ; ହଠାତ୍ ଦରକାର ପଡ଼ିଲେ, କିଛି ଖର୍ଚ୍ଚ କରିଦେବ। ସେତେବେଳେ ଚିଟ୍ (ଚିରିକୁଟି) ପ୍ରଥା ମଧ ଚଳୁଥିଲା । ଗ୍ରୁପ ବଡ଼ ବାବୁ ଅନ୍ୟ ଅଫିସର ଏକାଉଣ୍ଟାଣ୍ଟଙ୍କ ଠାରୁ ଚିଟ ଦେଇ ଟଙ୍କା ନେଇଥାନ୍ତି । ଏବଂ ତା' ସୁଝିବାର ନା ନିଅନ୍ତି ନାହିଁ ତା ମୁଁ ଗ୍ରୁପରେ ଥିବା ବେଳେ ବେଶ୍ ଅନୁଭବ କରିଥିଲି ଓ ସେଥିପାଇଁ ମୁଁ ପଇସା ଦେବାକୁ କେବେ ବି ଇଚ୍ଛା ପ୍ରକାଶ କରିନାହିଁ ଓ ସେପରି ଚିଟ୍ ଆସିଲେ; ଅଫିସରଙ୍କୁ ଦେଖାଇ ଫୋନ୍ କରି ମନା କରିଦେବାକୁ ପ୍ରସ୍ତାବ ଦେଇଥାଏ।

ଏହି ସମୟରେ ବେଟେରୀ ଅଫିସ ଗୋଟିଏ ଜୁନିଅର ଓ ସିନିୟର ପିଲାଙ୍କର ଗୋଟିଏ କ୍ୟାମ୍ପ କରିବାକୁ, ଏନ୍.ସି.ସି. ଡାଇରେକ୍ଟରଙ୍କ ଠାରୁ ଚିଠି ଆସିଥିଲା ଏବଂ ତା ପାଇଁ କେତେ ଖର୍ଚ୍ଚ ହେବ ଆକଳନ କରି, ବେଟେରୀ ଅଫିସ ଡାଇରେକ୍ଟର, ଉଚ୍ଚଶିକ୍ଷା ବିଭାଗକୁ ଟଙ୍କା ରିଲିଜ କରିବା ପାଇଁ ସ୍ୱତନ୍ତ୍ର ପତ୍ରବାହାକଙ୍କ ହାତରେ ଚିଠି ପଠାଗଲା । କିନ୍ତୁ ପତ୍ରବାହାକ ଆସି ଖବର ଦେଲେ ଯେ; ଯେତେଦିନ ପର୍ଯ୍ୟନ୍ତ ଶଶାଙ୍କ ମହାନ୍ତି ସେ ଅଫିସରେ ଥିବ, ସେତେଦିନ ପର୍ଯ୍ୟନ୍ତ କୌଣସି ଟଙ୍କା ଡି.ପି.ଆଇ ଅଫିସରୁ କ୍ୟାମ୍ପ ପାଇଁ ଦିଆଯିବ ନାହିଁ । ଯେଉଁ ଲସ୍କରଟି ଚିଠି ନେଇଯାଇଥିଲା, ସିଏ ସିଧା ସଳଖ କର୍ଣ୍ଣଲ ଶର୍ମାଙ୍କୁ ଏ କଥା ଜଣାଇଦେଲା ଏବଂ ଏହା ଶୁଣି,

ଅଫିସର କମାଣ୍ଡି କର୍ଣ୍ଣଲ ଶର୍ମା ମତେ ଡାକି କାରଣ କ'ଣ ଜାଣିବାକୁ ଚାହିଁଲେ। ମୁଁ କିଛିଦିନ ପୂର୍ବରୁ ଘଟିଯାଇଥିବା ଗୋଟିଏ ଘଟଣା ବୁଝାଇବାକୁ ଚେଷ୍ଟା କଲି।

ଦିନେ ମୁଁ ୨ ଜଣ ଲସ୍କରଙ୍କ ଜି.ଫି.ଏଫ୍ ଟଙ୍କା ଉଠାଇବା ପାଇଁ ଦରଖାସ୍ତ ନେଇ ଯାଇଥିଲି ଏବଂ ଏନ୍.ସି.ସି. ବିଭାଗରେ ଯାଇ ଦେଖେତ ଡି.ଡି.ପି.ଆଇ ପରିଡ଼ା ବାବୁ ମଧ୍ୟ କିରାଣିଙ୍କ ସହିତ ବସି କିଛି ପାଇଲ କାମ କରୁଛନ୍ତି : ପରିଡ଼ା ବାବୁ କଟକ ବାରବାଟି ଷ୍ଟାଡିଅମ୍‌ରେ ସ୍ପୋର୍ଟସ୍ ଅଫିସର ଥିଲେ; ଆଉ ଡି.ପି.ଆଇ ଅଫିସର ଏଇ ପୋଷ୍ଟଟିକୁ ଡେପୁଟେସନରେ (୩ବର୍ଷ ପାଇଁ) ଆସିଥାନ୍ତି ତେଣୁ ସେଇ ହିସାବରେ ସିଏ ସ୍ପୋର୍ଟସ ଡାଇରେକ୍ଟରରୁ ଏନ୍.ସି.ସି. ସେକ୍ସନକୁ ଡେପୁଟେସନରେ ଆସିଥିଲେ ଓ ମୁଁ ତାଙ୍କ ଆଗରେ ବସି, ଡାଇରୀ ରେଜିଷ୍ଟରଟିକୁ ଆଣି, ଚିଠି ଦୁଇଟିକୁ ଏଣ୍ଟ୍ରି କରୁଥିଲି, ଗୋଟିଏ ଚିଠି ସରିଥିଲା, ଅନ୍ୟ ଚିଠିଟି ରେଜିଷ୍ଟ୍ରିର ନମ୍ବର ପକାଉଥଲା ବେଳେ ଜଣେ ବରିଷ୍ଠ କିରାଣି, ମୋ ଠାରୁ ରେଜିଷ୍ଟରଟିକୁ ଛାଡ଼ାଇ ନେଇ "ତୁମେ ସବଅର୍ଡିନେଟ ଅଫିସର ଲୋକ' ଆମ ରେଜିଷ୍ଟର ଛୁଇଁବାକୁ କିଏ କହିଲା, 'ଏତିକି କହିଛନ୍ତି, ମୋ ରାଗ କି ସମ୍ଭାଳେ, ମୁଁ ହଠାତ୍ ତାଙ୍କ ଠାରୁ ବହି ଛଡ଼ାଇ ଆଣିବା ସହିତ ତାଙ୍କ କଲର ଧରି ଟାଣିଆଣିଲି। ଆଉ ରାଗରେ କହିଲି, ଏଇଟା ଅଫିସ ହୋଇଗଲା, ଅନ୍ୟ କେଉଁଠି ହୋଇଥିଲେ, ଦୁଇଫାଳ କରିଦେଇଥାନ୍ତି। ପରିଡ଼ା ବାବୁ ସେମିତି ବସିଥାନ୍ତି। ସେ ଆଶ୍ଚର୍ଯ୍ୟ ହୋଇଗଲେ, ମୋର ଏପରି ବ୍ୟବହାର ଦେଖି, ମୁଁ ରାଗିକରି ଆଉ କାହା ସଙ୍ଗରେ କିଛି କଥାବାର୍ତ୍ତା ନକରି ଫେରି ଆସିଥିଲି। ତାର ୪-୫ ଦିନ ପରେ ପରିଡ଼ା ବାବୁ ନିଜେ ଜି.ପି.ଏଫ୍ ସାଙ୍କସନ୍ ଅଡର ଧରି ଅଫିସକୁ ଆସି ମତେ ଦେଇଥିଲେ ଏବଂ ସିଏ ମନା କରିଥିଲେ ଯେ ଯେତେଦିନ ପର୍ଯ୍ୟନ୍ତ ସିଏ, ଡି.ପି.ଆଇ ଅଫିସରେ ଥିବେ ସେତେଦିନ ପର୍ଯ୍ୟନ୍ତ ମୋର ସେ ଅଫିସକୁ ଯିବା ଦରକାର ନାହିଁ ନିହାତି ଦରକାର ପଡ଼ିଲେ; ଚିଠି କି ଖବର, ମତେ କଟକରେ ହିଁ ଦେଇଦେଲେ, ମୁଁ କରି

ଆଣିବି ବୋଲି କହିଥିଲେ। ବୋଧେ ଏଇକାରଣ ହୋଇଥିବ ବୋଲି, ମୁଁ କର୍ଣ୍ଣଲ ଶର୍ମାଙ୍କୁ ବୁଝାଇ ଦେଇଥିଲି।

କିଛିଦିନ ଚାଲିଗଲା ଡି.ପି.ଆଇ ଅଫିସରୁ କୌଣସି ଖବର କି ଚିଠି ନ ଆସିବାରୁ ଦିନେ, ସେଦିନ ଶନିବାର ଥିଲା ବୋଧେ, କାରଣ ସେ ଗୋଟିଏ ହାପପେଣ୍ଟ ଓ ହାପଶାର୍ଟ ପିନ୍ଧି ଅଫିସକୁ ଆସିଥିଲେ। ପ୍ରାୟ ଅଧଘଣ୍ଟା ଖଣ୍ଡେ ଅଫିସ କାମ ସାରି, ହଠାତ୍ ଅଫିସ ଜିପ ନେଇ କେଉଁଆଡ଼େ ଚାଲିଗଲେ, କାହାକୁ କିଛି ନ କହି; କିନ୍ତୁ ତାଙ୍କର ଅଭ୍ୟାସ ଯେ ସିଏ, ଅଫିସକୁ ଆସିଲେ, ଗୁଡ ମର୍ଣ୍ଣି ଓ ଅଫିସ ଛାଡ଼ିଲେ, କହିକରି ଅଫିସ ଛାଡ଼ନ୍ତି। ତେବେ ଶନିବାର ଗ୍ରୁପ କିମ୍ବା ଅନ୍ୟ ଅଫିସରଙ୍କ ସଙ୍ଗେ ଦେଖା ହେବାକୁ ଯାଇଥିବେ ବୋଲି ଭାବି, ସେ ଦିନର ସମସ୍ତ ଫାଇଲ କାମ ସାରି, ତାଙ୍କ ଟେବୁଲ ଉପରେ ରଖି ମୋ ରୁମକୁ ଫେରି ସିଟରେ ବସିଛିକି ନାହିଁ, ହଠାତ୍ ୧୦ ହଜାର ଟଙ୍କାର ୮ଟା ବଣ୍ଡଲ ମୋ ଟେବୁଲ ଉପରେ ଫିଙ୍ଗି ଦେଇ କହିଲେ, କେମ୍ପ କାମ ଆରମ୍ଭ କର। ଆଉ ଅଳ୍ପଦିନ ରହିଲା। ଦରକାର ହେଲେ କେଡେଟ ଷ୍ଟ୍ରେଙ୍ଗଥ୍ ଓ ମୁଭମେଣ୍ଟ ପ୍ଲାନ କୋରିଅର ଦ୍ୱାରା (ଲସ୍କର ଓ P.I Staff ଙ୍କ ଦ୍ୱାରା), ଚିଠି ପଠାଅ।

ବହୁ ପୂର୍ବରୁ ଢେଙ୍କାନାଳ କଲେଜରେ କେମ୍ପ କରିବା ପାଇଁ, କଲେଜ ପ୍ରିନ୍‌ସିପାଲ୍‌ଙ୍କଠାରୁ ପରମିଶନ ଅଣା ସରିଥିଲା। ଆଉ ସୁବେଦାର, ରିସେଲଦାରଙ୍କୁ ୨ ଦିନ ଆଗରୁ ପଠାଇ; ପିଲାଙ୍କ ଏକମଡେସନ, ଅଫିସ୍, ଅଫିସର ଓ ଷ୍ଟାଫ୍ ଏକମଡେଶନର ପ୍ଲାନ ଓ ସ୍କେଚ କରି ଆଣିବାକୁ କହିଦେଇ ଅଫିସରୁ ଚାଲିଗଲେ। ମୁଁ ସେ ଟଙ୍କାତକ ଗୋଟାଇ ନେଇ ଚେଷ୍ଟରେ ରଖିଲି। ସେତେବେଳେ ଜଣେ ସିନିଅର ସୁବେଦାର ଓ ମୋ ପାଖରେ ଚେଷ୍ଟର ଚାବି ରହୁଥିଲା। ସୁବେଦାର ଚେଷ୍ଟ ରେଜିଷ୍ଟ୍ରରକୁ ମେଣ୍ଟନ୍ କରନ୍ତି। ମୁଁ କେବଳ ଖର୍ଚ୍ଚ କରିବା ପାଇଁ, ଅଫିସରଙ୍କ ନିର୍ଦ୍ଦେଶ ପ୍ରକାର ଚେଷ୍ଟରୁ ଟଙ୍କା ଆଣିଥାଏ, ଯାହାକି ଚେଷ୍ଟ ରେଜିଷ୍ଟରରେ ମୋତେ ଦସ୍ତଖତ କରିବାକୁ ପଡ଼ିଥାଏ।

ବେଶ-କ୍ୟାମ୍ପ ପାଇଁ ସମସ୍ତେ ବ୍ୟସ୍ତ ହୋଇ ପଡ଼ିଲେ । କାମ ସୁରୁଖୁରୁରେ ଚାଲିଥାଏ । କେମ୍ପ ଆରମ୍ଭର ୨ ଦିନ ଆଗରୁ ସମସ୍ତ ଷ୍ଟାଫ ଯାଇ ସେଠାରେ ପହଞ୍ଚିଲେ ଓ ସମସ୍ତଙ୍କୁ ଯେଝାର କାମ ବାଣ୍ଟି ଦିଆଗଲା କେମ୍ପ ମଧ୍ୟ ସକାଳ ୫ରୁ ରାତି ଆଠ ପର୍ଯ୍ୟନ୍ତ କାର୍ଯ୍ୟ ନିର୍ଘଣ୍ଟ ଅନୁସାରେ ଚାଲିଲା । କେମ୍ପ ଆଉ ୪/୫ ଦିନ ସରିବାକୁ ଥାଏ । ସନ୍ଧ୍ୟା ସମୟରେ କେମ୍ପ କମାଣ୍ଡାଣ୍ଟ ଶର୍ମା ଆସି ଖବର ଦେଲେ । କାଲି ୧୧ଟା ବେଳେ ତମ ଡେପୁଟି ଡି.ପି.ଆଇ ପରିଡ଼ା ବାବୁ କେମ୍ପ ପରିଦର୍ଶନରେ ଆସୁଛନ୍ତି । ତେଣୁ କାଲି ପାଇଁ କେମ୍ପ ପ୍ରୋଗ୍ରାମ ଚେନ୍‌ଜ କର ।

୧. କାଲି ସକାଳୁ ପିଲା ୬ଟା ସୁଦ୍ଧା, ରୋଡ଼ମାର୍ଚ୍ଚରେ ବାହାରି ପଡ଼ିବେ । ୩ଟନରେ (ଟ୍ରକ) ୩-୪ଟା ସ୍କୁଲର ପିଲା-ଢେଙ୍କାନାଳଠାରୁ ୧୧ କିଲୋମିଟର ଯିବେ । ତା ପରେ ଚାଲିବେ, ପ୍ରତିଥର ୩-୪ଟା ସ୍କୁଲ ପିଲାଙ୍କୁନେଇ ୩ଟନର ପୂର୍ବରୁ ଯାଇଥିବା ପିଲାଙ୍କ ପାଖରେ ଛାଡ଼ିବ ଓ ସେମାନେ ସେଠାରୁ ଚାଲିବା ଆରମ୍ଭ କରିବେ, ପ୍ରତି ଟ୍ରିପରେ ୫ଜଣ ଲେଖାଏଁ ସିନିଅର ପିଲାଯିବେ ଓ ସବୁ P.I Staff ପ୍ରଥମ ଗାଡ଼ିରେ ଯିବେ ।

ଚାଲିବା ଓ ଗାଡ଼ିରେ ଯିବା ସବୁ ସାଢ଼େ ଆଠଟା ସୁଦ୍ଧା ସରିବ। ଶେଷ ଗାଡ଼ିରେ ଜଳଖିଆ ଯାଇ ପହଞ୍ଚିବ ଏବଂ ଦିନ ୨ଟା ବେଳେ ଲଞ୍ଚ ଖାଇବେ; ଅଧା ବାଟରେ। କ୍ଲର୍କମାନେ ଜିପ୍ ନେଇ, କପିଳାଶ ଚାଲିଯିବେ, ଯଦି କୌଣସି ପିଲା ଚାଲି ପାରିବ ନାହିଁ; ଫାଷ୍ଟଏଡ଼ ଜିପରେ ଯିବ । କ୍ଲର୍କମାନଙ୍କୁ କପିଳାଶରେ ଛାଡ଼ି ଜିପ୍ ପିଲାଙ୍କ ପାଖକୁ ଫେରି ଆସିବ ଓ ସୁବିଧା-ଅସୁବିଧାରେ ପାଣି ଫାଷ୍ଟଏଡ୍ ଏବଂ ଜିପ୍‌ରେ ଜଣେ କର୍ପୋରାଲ ନିଯୁକ୍ତ ରହିବେ ।

ଏ ଥିଲା ସେଦିନର ଟ୍ରେନିଂ ପ୍ରୋଗ୍ରାମ । ସନ୍ଧ୍ୟାବେଳେ କପିଳାଶ ବୁଲି ଆମେ ଫେରି ଆସି ଶୁଣିଲୁ ଯେ, ପରିଡ଼ା ବାବୁ ଆସିଥିଲେ, ସିଏ ବସ୍‌ରେ ଆସି କଲେଜ ପାଖରେ ନ ଓହ୍ଲାଇ ଢେଙ୍କାନାଳ ବସ ଷ୍ଟାଣ୍ଡକୁ

ଚାଲିଯାଇଥିଲେ ଓ ସେଠାରୁ ଚାଲି ଚାଲି କେମ୍ପକୁ ଆସିଥିଲେ, ଏବଂ ଆମକୁ ନ ଦେଖି ବା ଫାଇଲ ପତ୍ର ଦେଖିବାର କୌଣସି ଉପାୟ ନାହିଁ ବୋଲି ଅଫିସର ସିଧା-ସିଧା ମନାକରି ଦେବାରୁ ସିଏ କପେ ଚା ପିଇ ଢେଙ୍କାନାଳରୁ କଟକ ଫେରିଥିଲେ ।

ଏ ଘଟଣା ପରେ ଆମ ଅଫିସ୍‌ରୁ କେହି ବି କେମ୍ପ ଟଙ୍କା ପାଇଁ ଡି.ପି.ଆଇ ଅଫିସକୁ ଯାଇ ନ ଥିଲେ କି ଚିଠି ମଧ୍ୟ ଦିଆଯାଇ ନ ଥିଲା । ପରିଡ଼ା ବାବୁ ନିଜେ ଆମେ ଯାହା ବଜେଟ ପଠାଇଥିଲୁ, ଠିକ୍ ସେହିଭଳି ରିଲିଜ ଅର୍ଡ଼ର ଆଣି ଆମ ଅଫିସକୁ ଆସିଥିଲେ ଓ ସେ ଦିନର ଘଟଣା କହିଥିଲେ । ସବୁ ଜାଣିଥିଲେ ସୁଦ୍ଧା ମୁଁ ଆଗରୁ ନ କହି କାହିଁକି ଯାଇଥିଲେ ବୋଲି ତାଙ୍କୁ ମୋ ଆଡୁ ସଫେଇ ଦେଇଥିଲି । କେମ୍ପର ପ୍ରୋଗ୍ରାମ ବହୁ ଆଗରୁ ହୋଇଥିଲା ବୋଲି କହିଥିଲି ।

ତାର କିଛିଦିନ ପରେ ମୋର ବଦଳି, ୧ମ ଓଡ଼ିଶା ଘୋଡ଼ାସବାର ବାହିନୀ (R&V) ଭୁବନେଶ୍ୱରକୁ ହୋଇଥିଲା ଓ ମୁଁ ନଭେମ୍ବର ମାସ ୧୯୭୯ ମସିହାରେ ଆସି ଯୋଗ ଦେଇଥିଲି ।

ସେଦିନ ଥିଲା ୧୯.୧୧.୧୯୭୯ ମସିହା । ବେଟେରୀ ଅଫିସରୁ ଆସି ଜଏନ କଲି, ଘୋଡ଼ସବାର ବାହିନୀରେ ବେଶ ଭଲ ଲାଗୁଥିଲା, ଘୋଡ଼ା, ସଇସ, ଓ ଷ୍ଟାଫ ବି ଗୋର୍ଖା ମୋର ଗୋର୍ଖା ଷ୍ଟାଫଙ୍କ ପ୍ରତି ଟିକିଏ ବେଶି ଆଶକ୍ତି, କାରଣ ପ୍ରଥମରୁ ହିଁ ସୁବେଦାର କୃଷ୍ଣ ବାହାଦୁର ଥାପାଙ୍କ ସହିତ କାର୍ଯ୍ୟକରି ଆସିଛି । ଭୁବନେଶ୍ୱର ଆସି ଘରଖଣ୍ଡେ ପାଇଁ ସରକାରଙ୍କୁଚିଠି ଲେଖିଥିଲି । ତେବେ ୬ନଂ ଅଫିସ୍ ପାଖ ଗୋଟିଏ ୨ମହଲା ବିଲ୍‌ଡିଂ P.I.Staffଙ୍କ ପାଇଁ ରେଣ୍ଟରେ ନିଆଯାଇଥିଲା । ସେଥିରେ ମୋ ପାଇଁ ମଧ୍ୟ ଗୋଟାଏ ରୁମ ମିଳିଗଲା । ସେଠି ପିଆଇ ଷ୍ଟାଫଙ୍କ ମଧ୍ୟରୁ ଅଧିକାଂଶ ପରିବାର ସହିତ ରହୁଥିଲେ, ତେଣୁ ମୁଁ ମଧ୍ୟ ମୋର ପିଲାମାନଙ୍କୁ ନେଇ ଗୋଟିଏ ରୁମ୍ ନେଇ ରହିଲି ।

ବେଶ୍ କିଛିଦିନ ଚାଲିଗଲା, ମୋ ନା ଆସିଗଲା ଦିଲ୍ଲୀରେ ହେଉଥିବା ପ୍ରି.ଆର.ଡ଼ି.ସି କେମ୍ପ ପାଇଁ । ପ୍ରତିବର୍ଷ ଭଳି ଘୋଡ଼ା ବହୁଦିନ ପୂର୍ବରୁ ଟ୍ରେନରେ ଦିଲ୍ଲୀ ଚାଲିଯାଇଥାନ୍ତି । ପିଲାମାନେ ଯିବା ଆଗରୁମତେ ଦିଲ୍ଲୀରେ ପହଞ୍ଚିବାର ଥିଲା ତେଣୁ ମୁଁ ଏକା ଦିଲ୍ଲୀ ଯାଇଥିଲି । ଯେତେବେଳେ ଦରମା ବହୁତ କମ୍ ଥିଲା । ଓଡ଼ିଶା ସରକାରଙ୍କ ପକ୍ଷରୁ ୨ୟ ଶ୍ରେଣୀର ଟିକଟରେ ରିଜର୍ଭ କରିଥିଲି । କିନ୍ତୁ ମାଡ୍ରାସ୍; ମଧ୍ୟ ପ୍ରଦେଶ; ଭୋପାଳ, ଆସାମ, ଆନ୍ଧ୍ର ଏପରି ବିଭିନ୍ନ ପ୍ରଦେଶରୁ ମତେ ମିଶାଇ ୫ଜଣ କିରାଣି ଆସିଥିଲେ । କିଏ ପ୍ଲେନରେ ତ କିଏ ଫାଷ୍ଟକ୍ଲାସ ଟ୍ରେନ୍‌ରେ ଆସି ପହଞ୍ଚିଲେ । ତେବେ ଆମ ଅଫିସର କର୍ଣ୍ଣେଲ ଶର୍ମା ସିନିଅର ଥିଲେ, ଏବଂ ଦୁର୍ଭାଗ୍ୟକୁ ମୁଁ ମଧ୍ୟ ସମସ୍ତଙ୍କ ଠାରୁ ସିନିଅର ଥିଲି, ତେଣୁ ମୋତେ ସମସ୍ତ ଦାୟିତ୍ୱ ବୁଝିବାକୁ ପଡୁଥିଲା । ତେବେ ଆଶାଥିଲା କେମ୍ପଟି ସୁରୁଖୁରୁରେ କଟିଯିବ । ଗାରିସନ ପ୍ୟାରେଡ ଗ୍ରାଉଣ୍ଡ; ଚାରିଆଡ଼େ ଟେଣ୍ଟ ହିଁ ଟେଣ୍ଟ । ସେତେବେଳେ ବିଲ୍ଡଅପ (କୋଠାଘର) ଏକମଡେସନ (ରହିବା ବ୍ୟବସ୍ଥା) ନଥିଲା ତେଣୁ ଟେଣ୍ଟରେ ହିଁ ରହିବା, ଅଫିସ କରିବା ସବୁ ।

ତେବେ କେମ୍ପ ଆରମ୍ଭ ହେବାର ୨ ଦିନ ବିତିଗଲା କିନ୍ତୁ ସବୁ ପ୍ରଦେଶରୁ କଣ୍ଟିଜେଣ୍ଟ (ଭାଗନେବା ପାଇଁଥିବା) ଏନ୍.ସି.ସି. ପିଲା ଆସିଲେ ନାହିଁ। ୧୬ଟା ପ୍ରଦେଶ ଆସିବାର ଥିଲା। ସେଥିରୁ କେବଳ ୯ଟା ପ୍ରଦେଶ ଭାଗନେବାକୁ ଆସିଥିଲେ ଯାହା ଫଳରେ କି ମତେ ପିଲାଙ୍କ ପାଇଁ ଏକ ଅଲଗା ଲଙ୍ଗର (ଖାଇବା ପାଇଁ ଅଲଗା ବ୍ୟବସ୍ଥା) କରିବା ସପକ୍ଷରେ ନଥିଲି, ତେଣୁ ଆମ କର୍ଣ୍ଣେଲ ଯିଏକି କେମ୍ପ କମାଣ୍ଡେଣ୍ଟ ଥିଲେ ତାଙ୍କୁ ବୁଝାଇ ଦେଲି ଯେ, ଆଉ ୩-୪ଜଣ ରୋଷେୟା ଓ ହେଲପରଙ୍କୁ ନିଯୁକ୍ତି ଦେଇ ପିଲାଙ୍କ ଖାଇବା ପାଇଁ ଏକ ଅଲଗା ଲଙ୍ଗର (ରୋଷେଇଶାଳ) କଲେ ପଇସା ଅଣ୍ଟିବ ନାହିଁ । ତେଣୁ - ଜେସିଓ-ଏନ୍‌ସିଓ ମେସରେ କେଡେଟ୍ ଓ କିରାଣି ଓ ଲସ୍କରଙ୍କୁ ମିଶାଇ ପ୍ରାୟ ୨୦୦ ଜଣଙ୍କ ପାଇଁ ବ୍ୟବସ୍ଥା କରିବାକୁ କହିଥିଲି। ତାହାହିଁ ହେଲା - ତଥାପି କେମ୍ପ ପାଞ୍ଚଦିନ ପୂର୍ବରୁ

ପଇସା ସରିଗଲା ଓ ମେସ ହାବିଲଦାର ୨ ଦିନ ଆଗରୁ ଜଣାଇ ଦେଇଗଲେ ଯେ ୨ ଦିନ ପରେ ପଇସା ସରିଯିବ ତେଣୁ ପଇସାର ବନ୍ଦୋବସ୍ତ କରନ୍ତୁ। କେମ୍ପ ଆହୁରି ୭ ଦିନ ଅଛି। ଆର.ଡି.ସି. ପିଲା ଆସିଗଲେ, ଏ ପିଲା ତାଙ୍କ ସହିତ ମିଶିଯିବେ। ଯେଉଁ ପ୍ରଦେଶର ପିଲା, ସେଇ ପ୍ରଦେଶର ପିଲାଙ୍କ ସହିତ ଗଣତନ୍ତ୍ର ଦିବସ ପ୍ୟାରେଡରେ ଭାଗନେବା ପାଇଁ ଆସୁଥିବା ପିଲାଙ୍କ ସହିତ ମିଶିଯିବେ; କିନ୍ତୁ ଆଉ ୫ ଦିନ ପାଇଁ କ'ଣ କରାଯିବ। ସମସ୍ତଙ୍କ ଚିନ୍ତା ବଢ଼ିଗଲା କିନ୍ତୁ ସମାଧାନ କରିବାକୁ କାହା ମୁଣ୍ଡରେ ବୁଦ୍ଧି ପଶିଲାନି। ଏପରିକି ଆମ ଅଫିସର କମାଣ୍ଡିଂ ଯିଏ କି ସେଠାରେ କେମ୍ପ କମାଣ୍ଡିଂର ଦାୟିତ୍ୱ ନେଇଥିଲେ, ସେ ମଧ୍ୟ ହାତ ଟେକି ଦେଲେ। ତେବେ ମୁଁ ସେ ପାଞ୍ଚଦିନର ହିସାବ କରି, ଜେ.ସି.ଓ - ଏନ୍.ସି.ଓ ମେସ୍‌ର ସୁବେଦାର ମଜେରଙ୍କଠାରୁ ଖଣ୍ଡେ ଚିଠି ନେଇ ଡି.ଜି. ଏନ୍.ସି.ସି. ଅଫିସ୍‌କୁ ଯିବାକୁ ବାହାରିଲି। ଗାଡ଼ି ଚାର୍ଯରେ ଆମ ଓଡ଼ିଶାର ୬ଷ୍ଠ ବଟାଳିଅନ୍ ପୁରୀର ଜଣେ ସୁବେଦାର ଥାଆନ୍ତି। ସିଏ ବି ୧୧ ଗୁର୍ଖା ବଟାଲିଆନର, ତେଣୁ ତାଙ୍କୁ କହିବାରୁ ସେ ଗୋଟାଏ ଶକ୍ତିମାନ (୩ଟନ)ର ବ୍ୟବସ୍ଥା କରିଦେଲେ।

ମୁଁ ଯାଇ ଡି.ଜି. ଏନ୍.ସି.ସି. ଅଫିସ୍‌ରେ ପହଞ୍ଚେତ, ନାଲି ଫିତା ବାଲା ଟନା-ଟନ ଡ୍ରେସରେ, ଏପଟ ସେପଟ ହେଉଥିଲେ ମେଜର, କର୍ଣ୍ଣଲ, ଲେଫନେଣ୍ଟ କର୍ଣ୍ଣେଲମାନେ। ରିସେପ୍‌ନିଷ୍ଟଙ୍କୁ କହିବାରୁ, ସେ ସମ୍ପୂର୍ଣ୍ଣ ମନା କରିନେଲେ ଯେ, ନାଇଁ ଆପଣ ଦେଖା କରିପାରିବେନି। ଏପଏଣ୍ଟମେଣ୍ଟ ନେବାକୁ ପଡ଼ିବ। ତେଣୁ, ମୋର ପାରା ମୁଣ୍ଡକୁ ଚଢ଼ିଗଲା। ମୁଁ ମଧ୍ୟ ବେଶ ପାଟିକରି ଉଠିଲି - ୨୦୦ ପିଲାଙ୍କ ଜୀବନ ବଡ଼ ନା ତୁମର ଏପଏଣ୍ଟମେଣ୍ଟ - କାଲି ପିଲାଙ୍କୁ ମୁଭମେଣ୍ଟ ଅର୍ଡର ଦେଇ ବିଦା କରିଦେବି। ତୁମ ଗଣତନ୍ତ୍ର ପ୍ୟାରେଡ଼ରେ ଭାରତର ନ'ଟା ପ୍ରଦେଶର ପିଲା ଭାଗନେଇ ପାରିବେନି। ଏଭଳି ଉଚ୍ଚସ୍ୱରରେ କଥାବାର୍ତ୍ତା ଶୁଣି, ଜଣେ କର୍ଣ୍ଣେଲ ର୍‍ୟାଙ୍କର ଅଫିସର ଆସି ପହଞ୍ଚି ସବୁକଥା ବୁଝିଲେ ଓ ମତେ ନେଇ ଡି.ଜି.ଙ୍କ ସହିତ ଦେଖା କରାଇଲେ, ମୁଁ ଆମୂଳଚୂଳ ସମସ୍ତ ଖବର ଶୁଣାଇଲି ଓ ମେସ୍

ମେନେଜରଙ୍କଠାରୁ ନେଇଥିବା ଚିଠିଟି ଦେଖାଇଲି ଏବଂ ମୁଁ ଅନ୍ୟ ରାଜ୍ୟଠାରୁ ପାଇଥିବା ଟଙ୍କାର ହିସାବ ମଧ୍ୟ ଦେଖାଇ ପରିସ୍ଥିତି ବିଷୟରେ ବୁଝାଇଦେଲା ପରେ, ଡି.ଜି. ଟେଲିଫୋନ୍ କରି କ୍ୟାଣ୍ଟିନ୍ ମେନେଜରଙ୍କୁ ୧୦ ହଜାର ଟଙ୍କା ଆଣିଦେବାକୁ କହିଲେ, ପ୍ରାୟ ଅଧଘଣ୍ଟା ଭିତରେ ମତେ ୧୦ ହଜାର ଟଙ୍କା ମିଳିଲା ଓ ମୁଁ ଖଣ୍ଡେ ସାଧା କାଗଜରେ ରସିଦ ଲେଖିଦେଇ, ଟଙ୍କା ନେଇ ଫେରିଲି ଓ କେମ୍ପକୁ ସାରି ଆର୍.ଡି.ସି. କେମ୍ପର ରାଜ୍ୟ କଣ୍ଟିଜେଣ୍ଟ କମାଣ୍ଡରଙ୍କୁ; ନିଜ ନିଜ ପ୍ରଦେଶର ପିଲାଙ୍କୁ ହସ୍ତାନ୍ତର କରି ମୁଁ ଓଡ଼ିଶା ଫେରିଲି। ସେବର୍ଷ ଓଡ଼ିଶା ଗୋଲ୍ଡ, ସିଲଭର ହୋଇ ପ୍ରାୟ ୮ଟି ଇଭେଣ୍ଟରେ ପୁରସ୍କୃତ ହୋଇଥିଲା।

**କିରାଣୀଙ୍କ ନାମରେ ଥାନାରେ ଏତଲା**

୧ମ ଓଡ଼ିଶା ଘୋଡ଼ସବାର ବହିନୀରେ କାର୍ଯ୍ୟରତ ଥିବାବେଳେ, ଦିନେ ସନ୍ଧ୍ୟାବେଳେ, ବୋଧେ ଜୁଲାଇ ମାସ ହେବ – ୩ ଜଣ ୫ମ ଓଡ଼ିଶା ବଟାଲିଅନ୍‌ର କିରାଣି ପଚାରି ପଚାରି ବର୍ଷାରେ ମୋ ବସା ଘରେ ପହଞ୍ଚିଲେ। ସେମାନେ ହେଲେ ୫ମ ଓଡ଼ିଶା ବଟାଲିଅନ ସମ୍ବଲପୁରର ବଡ଼ବାବୁ ଶ୍ରୀଚୈତନ୍ୟ ବେହେରା (ମୋ ଠାରୁ ଜୁନିଅର ହେଲେବି କୋଟାରେ ପ୍ରମୋଶନ ପାଇଁ ମୁଖ୍ୟ କିରାଣି (ହେଡକ୍ଲର୍କ) ହୋଇଯାଇଥିଲେ। ଆଉ ଜଣେ ଜୁନିଅର କ୍ଲର୍କ ଶ୍ରୀ ଦେବରାଜ ମହାନ୍ତି ଓ ଅନ୍ୟ ଜଣେ ସିନିଅର କ୍ଲର୍କ ଆର୍.ସି. ଆଚାର୍ଯ୍ୟ। କଥା କ'ଣ ବୁଝୁ ବୁଝୁ। ତାଙ୍କ ନାମରେ ତାଙ୍କର ଗ୍ରୁପ କମାଣ୍ଡର, ଏମାନେ ଅଫିସ ଟେଲିଫୋନ୍ ଚୋରି କରିଛନ୍ତି ବୋଲି ଥାନାରେ ଏତଲା ଦେଇଛନ୍ତି ଓ ପୋଲିସ୍ ଏମାନଙ୍କୁ ଖୋଜୁଛି। ହୁଏତ ପୋଲିସ୍ ତାଙ୍କ ଘର ଠିକଣାରେ ପହଁଞ୍ଚି ଯାଇପାରେ।

ସେତେବେଳେ ମୁଁ ଏନ୍.ସି.ସି. ଏସୋସିଏସନ୍‌ର ପ୍ରେସିଡେଣ୍ଟ ଭାବେ ନିର୍ବାଚିତ ହୋଇଥିଲି ଏବଂ ଏହି ମାମଲା ସୁଧାରିବାକୁ ଯାଇ ମୁଁ ଏସୋସିଏସନ୍‌ର ସେକ୍ରେଟେରୀ କିମ୍ବା ଅନ୍ୟ କାହାକୁ ନ କହି ସେଇ ବର୍ଷାରେ ବାହାରି ପଡ଼ିଲି ସମ୍ବଲପୁର। ଭୁବନେଶ୍ୱରରୁ ପ୍ରାୟ ୫ଟା ସମୟରେ

ବାହାରିଲି; କାରଣ ରାତି ୯ଟାରେ ସ୍ଲିପର କୋଚ ଥିଲା କଟକରୁ ସମ୍ବଲପୁର ତା ପରଦିନ ସକାଳୁ ସକାଳୁ ପହଞ୍ଚି କଲେଜରେ ଥିବା ଅଫିସରେ ନିତ୍ୟକର୍ମ ସାରି ପୋଲିସ୍ ଥାନା ଯାଇ; ଆଇ.ଆଇ.ସି.ଙ୍କୁ ଭେଟି ସମସ୍ତ କଥା ବୁଝିଲି, ସବୁ ଥିଲା ସତ ଏବଂ ସେମାନେ ଏ ତିନିଜଣଙ୍କୁ ଅଫିସରେ ଖୋଜି ନ ପାଇବାରୁ ତାଙ୍କ ଘର ଗାଁ ଠିକଣା (ପରମାନେଣ୍ଟ ରେସିଡେନ୍ସ) ଆଣି ଆସିଛନ୍ତି ଓ ତାଙ୍କ ଗାଁର ନିକଟସ୍ଥ ପୋଲିସ ଥାନାକୁ ଖବର ଦେବା ପାଇଁ ପ୍ରସ୍ତୁତି କରୁଛନ୍ତି।

ମୁଁ କେବଳ ଗୋଟିଏ କଥା କହିଲି, ଆଜ୍ଞା ଟେଲିଫୋନ୍ ଗୋଟିଏ ତା ପୁଣି ଚୋରିକଲେ ୩ଜଣ ସରକାରୀ କର୍ମଚାରୀ, ଯାହାର ଦାମ କି ୧୦୦ ରୁ ୧୫୦ଟଙ୍କା ଭିତରେ ହେବ। ଏହାକୁ ନେଇ ସେମାନେ କ'ଣ କରିବେ, ଅଫିସରେ ଆହୁରି ବହୁତ ଜିନିଷ ଥିଲା ଚୋରି କରିବାକୁ। ଅତି କମ୍‌ରେ ଗୋଟାଏ ଟାଇପ୍ ରାଇଟର ଚୋରି କରିଥିଲେ ଅନ୍ତତଃ କିଛିଟା ଆଖିଦୃଶିଆ ହୋଇଥାନ୍ତା। ଆପଣ ପୁଣି, ସେମାନଙ୍କ ଗ୍ରାମକୁ ଯିବେ, କେତେ ଖର୍ଚ୍ଚ ସରକାରଙ୍କର ହେବ ଆପଣ ତା ନିଶ୍ଚୟ ଉପଲବ୍ଧି କରିପାରୁଥିବେ।

ମୁଁ ଆଗରୁ ମୋର ପରିଚୟ ଦେଇସାରିଥିଲି। ତେଣୁ ସେ ଟିକିଏ ଭାବି, ମତେ ପଚାରିଲେ କ'ଣ କରିବା କୁହନ୍ତୁ। ମୁଁ କହିଲି, ମୁଁ ଲେଖିଦେଇ ଯାଉଛି ଯେ ମୋ ତତ୍ତ୍ୱାବଧାନରେ ତାଙ୍କୁ ରଖିଛି। ଦରକାର ପଡ଼ିଲେ, ମୁଁ ସେମାନଙ୍କୁ ଆଣି ଥାନାରେ ଉପସ୍ଥିତ କରାଇବି। ତେଣୁ ଆପଣ ଏ ୧୫୦ ଟଙ୍କା ପାଇଁ ବ୍ୟସ୍ତ ହୁଅନ୍ତୁ ନାହିଁ। ଦରକାର ହେଲେ ମୁଁ ଗୋଟିଏ ଟେଲିଫୋନ୍‌ର ବ୍ୟବସ୍ଥା କରିଦେବି।

ସେ ମହାଶୟ ଠିକ୍ ବୁଝିଗଲେ। ଗ୍ରୁପ୍ ଅଫିସ ଦେଇଥିବା ଏଫ୍.ଆଇ.ଆର୍‌ଟିକୁ ପୁଣିଥରେ ପଢ଼ିଲେ ଓ ଟିକିଏ ହସି କହିଲେ; ଏ ସବୁ ଚିନ୍ତା କରିବାକୁ ମୁଁ ସମୟ ପାଇ ନଥିଲି। ମୁଁ ବି ଟେଲିଫୋନ୍ ଡିପାର୍ଟମେଣ୍ଟକୁ କହି ଗୋଟାଏ ଟେଲିଫୋନ୍ ଆଣି ପାରିବି। ଆମ ଥାନାରେ ବି ଗୋଟିଏ,

ଦୁଇଟା ଟେଲିଫୋନ୍ ପଡ଼ିଛି। ହଉ ତେବେ ଆପଣ ଯା'ନ୍ତୁ, ମୁଁ ସବୁ ବୁଝିଗଲି। ତେବେ ଦରକାର ପଡ଼ିଲେ ମୁଁ ଆପଣଙ୍କ ସହିତ କଥା ହୋଇ ଯାହା କରିବା କଥା କରିବି। ମୋ ଟେଲିଫୋନ୍ ନମ୍ବର ସହିତ ଏ ତିନିଜଣ ମୋ ପାଖରେ ଅଛନ୍ତି ଓ ଦରକାର ପଡ଼ିଲେ, ମୁଁ ଆଣି ସେମାନଙ୍କୁ ଥାନାରେ ଉପସ୍ଥିତି କରାଇବି ବୋଲି ଲେଖିଦେଇ ଆସିଲି–

ଏ ମାମଲା ସେଇଠି ହିଁ ପୂର୍ଣ୍ଣଛେଦ ପଡ଼ିଲା। କାରଣ ତାପରେ ମୁଁ ସମ୍ବଲପୁର ଥାନାରୁ କିଛି ଖବର ପାଇ ନାହିଁ। ଏମାନଙ୍କୁ ମଧ୍ୟ, ଡାଇରେକ୍ଟର ଉଚ୍ଚଶିକ୍ଷା ବିଭାଗରେ ବସି ତିନି ଜଣଙ୍କୁ କଟକର ଅଫିସକୁ ବଦଳି କରି ଆଣିଲି। ଏଇ ସମୟରେ ମଧ୍ୟ ଡି.ପି.ଆଇ ଅଫିସର ଡେଜିଗ୍ନେଟେଡ୍ ହୋଇ ଡି.ଏଚ୍.ଇ ଅଫିସ ହେଲା ଓ ଡାଇରେକ୍ଟର ଏନ୍.ସି.ସି. ଅଫିସ ମଧ୍ୟ ଡେପୁଟି ଡି.ଜି. ଅଫିସ ହୋଇଗଲା। କାରଣ ଜଣେ ପ୍ରତିରକ୍ଷା ବିଭାଗର ଡାଇରେକ୍ଟର ସିଧା ସଳଖ ସେକ୍ରେଟେରୀ (ରାଜ୍ୟ ସରକାରଙ୍କର)ଙ୍କ ସହିତ ଦେଖା କରିବାର ସୁବିଧା ନଥିଲା। ତେଣୁ ସେ ପୋଷ୍ଟଟିକୁ ଅପଗ୍ରେଡ୍ କରିବାର ବୁଦ୍ଧି ମଧ୍ୟ କମୋଡର ବାଲସୁବ୍ରମଣିୟମଙ୍କ ଥିଲା।

ଏମିତି ତ ଦିନ ଗଡ଼ି ଚାଲିଥାଏ। ଭୁବନେଶ୍ୱର ଆସି ଡି.ପି.ଆଇ ଓ ସେକ୍ରେଟେରୀ ଅଫିସକୁ ରୀତିମତ ଯିବା ଆସିବା କରୁଥାଏ। ଅଫିସ କାମ ପାଇଁ, ଦିନେ କିଛି ଗାଡ଼ି ନଥିବାରୁ ମୁଁ, ଘୋଡ଼ାଗାଡ଼ିରେ ଡି.ପି.ଆଇ ଓ ସେକ୍ରେଟେରୀ ଅଫିସକୁ ଯାଇଥିଲି, ତା ଦେଖି ସମସ୍ତଙ୍କ ଚକ୍ଷୁଶୂଳର ଶିକାର ହେବାକୁ ପଡ଼ିଲା – କିଛି ସମୟ ଭିତରେ କଥାଟା ରାଷ୍ଟ୍ର ହୋଇଗଲା। ଏ ବିଷୟରେ ମତେ ମୋ ଅଫିସ କିମ୍ବା ରାଜ୍ୟର ଡି.ପି.ଆଇ ବା ସେକ୍ରେଟେରିଏଟ୍ର କେହି ମତେ ପଚାରି ବାହାନ୍ତି। କିନ୍ତୁ ଏନ୍.ସି.ସି. ଡାଇରେକ୍ଟରରୁ ମତେ ଜଣେ ଅଫିସର (ଓଡ଼ିଆ) ମତେ ପରିହାସ ଛଳରେ ପଚାରିଲେ, ଏବଂ ମୁଁ ମଧ୍ୟ ତାଙ୍କୁ ଠିକ୍ ଜବାବ ଦେଲିଯେ, ବର୍ଷ ବର୍ଷ ଧରି ଖାଇପିଇ ଖଚରଟା ଗୋଲ ବୁଲି ଗଲାଣି। ଅଫିସ ଗାଡ଼ିନେଇ ଯାଇଥିଲେ ଅତି କମ୍‌ରେ ଟ. ୧୫ଙ୍କାର ପେଟ୍ରୋଲ୍ ଖର୍ଚ୍ଚ ହୋଇଥାନ୍ତା।

ଅନ୍ତତଃ ସରକାରଙ୍କର ୧୫ ଟଙ୍କାତ ବଞ୍ଚେଇ ଦେଲି । ସେତିକିରେ ସେ ଘଟଣା ଆଉ ବଢ଼ି ନଥିଲା, ତାପରେ ମଧ୍ୟ ମୁଁ ଆଉ ଟାଙ୍ଗା ବ୍ୟବହାର କରିନଥିଲି ।

ତାପରେ ଜଣେ ଓଡ଼ିଆ କର୍ଣ୍ଣଲ ଆସି ଅଫିସର କମାଣ୍ଡିଂ ଭାବେ ଜଏନ୍ କଲେ । ସବୁଠାରୁ ବଡ଼ ଘଟଣା ଘଟିଲା ଜଣେ ସ୍କୁଲ ଶିକ୍ଷକଙ୍କୁ ଏନ୍.ସି.ସି. ଅଫିସର ଭାବେ, ଟ୍ରେନିଂ ପାଇଁ କାମ୍ପଟି ପଠାଇବା ଓ ପାଶ୍ କରାଇବା ।

ଯେତେଦୂର ମନେ ପଡ଼େ ୟୁନିଟ୍ ୮ ସ୍କୁଲର ସେ ଶିକ୍ଷକତା କରୁଥିଲେ ଓ ଏନ୍.ସି.ସି. ଅଫିସର ଭାବେ ଟ୍ରେନିଂ ନେଇ କାର୍ଯ୍ୟ କରବାକୁ ଭାରି ଇଚ୍ଛୁକ ଥିଲେ । ତେଣୁ ମୁଁ ତାଙ୍କର ସମସ୍ତ ଡକୁମେଣ୍ଟ ଠିକ୍ କରି । ଏପରିକି ମେଡିକାଲ୍ ସାର୍ଟିଫିକେଟ ସହିତ - ଟ୍ରେନିଂ ପାଇଁ ସୁପାରିଶ କରାଇନେଲି କିନ୍ତୁ ସେ ଟ୍ରେନିଂରେ ଫେଲ୍ ହୋଇ ଫେରିଲେ । କାରଣ ସିଏ ହାଇଡ୍ରୋସିଲ୍ ବା ଏକଶିରା ହେତୁ ଠିକ୍ ଭାବେ ଟ୍ରେନିଂରେ ଯୋଗଦେଇ ପାରିନଥିଲେ । ତେଣୁ ତାଙ୍କୁ ଫେଲ କରି ଦିଆଯାଇଥିଲା; ତଥାପି ସେ ପୁଣିଥରେ ଟ୍ରେନିଂ ଯିବାକୁ ଚାହିଁଲେ । ଏବଂ ଅଫିସରଙ୍କ ମନା ସତ୍ତ୍ୱେ, ଅଫିସର ଛୁଟିରେ ଥିବା ସମୟରେ ତାଙ୍କୁ ଟ୍ରେନିଂକୁ ପଠାଇ, ପାଶ କରି ଆଣିଲି, ତେଣୁ ମୁଁ ଅଫିସରଙ୍କର କ୍ରୋଧର ଶିକାର ହୋଇଥିଲେ ମଧ୍ୟ, ଯାହା ରାଗ ତା ଭିତରେ କୁହୁଳୁଥିଲା ।

ଥରେ - ବୋଧେ ଫେବୃୟାରୀ ଶେଷ ସପ୍ତାହ ହେବ କର୍ଣ୍ଣେଲ ମହାନ୍ତି, ଆମର ଅଫିସର କମାଣ୍ଡିଂ, ଡଃ ପରିଡା ଜଣେ ଓୟୁଏଟିର ପଶୁଡାକ୍ତରି ଛାତ୍ର ଓ ମୁଁ ଠିକ୍ ୫ଟା ପରେ, କୌଣସି କାରଣହେତୁ ଘୋଡ଼ାଶାଳ ଆଡ଼କୁ ବାହାରିଥିଲୁ, କର୍ଣ୍ଣଲ ମହାନ୍ତି ଗେଟ ଆଗରେ ଥିବା ଗୋଟିଏ ଆମ୍ବ ଗଛକୁ ଚାହିଁ କହିଲେ, ଆରେ ଏ ଗଛରେ କ'ଣ ବଉଳ ଆସିଗଲାଣି । କିଛିଦିନ ତଳେ ବୋଧେ ବଉଳ ଅମାବାସ୍ୟା ଯାଇଥାଏ, ତେଣୁ ମୁଁ ହସି-

ହସି କହିଦେଲି ଆପଣ କେଉଁ ବିଦେଶରୁ ଫେରିଛନ୍ତି କି । ବାସ, ଏତିକି ଗରଗର ହୋଇ କ'ଣ କହିଲେ, ମୁଁ ସେକଥାକୁ ଧ୍ୟାନ ନଦେଇ ହସରେ ଉଡ଼ାଇ ଦେଲି । ସେଇ ବର୍ଷ ଜଣେ ବଙ୍ଗାଳି ଅଫିସର ଆମ ଘୋଡ଼ାଶାଳ ପଛରେ ଘରଭଡ଼ା ନେଇ ରହୁଥିଲେ । ଆମର ଗୋଟିଏ ଘୋଡ଼ା ବେମାର ହେବାରୁ ତାକୁ ମାରିବାକୁ, ଦିଲ୍ଲୀରୁ ଅର୍ଡର ଆସିଲା ଓ ଓୟୁଏଟିର ଡିନ.. ମହାନ୍ତିଙ୍କ ତତ୍ତ୍ୱାବଧାନରେ ଘୋଡ଼ାକୁ ମାରି, ଓୟୁଏଟି କ୍ୟାମ୍ପସ ଭିତରେ ପୋତି ଦିଆଗଲା, କାରଣ ଆମ ଅଫିସର ବଡ଼ ଗାଡ଼ି ଅଫରୋଡ଼ ଥିଲା ଓ ଅନ୍ୟ ଗାଡ଼ି ଭଡ଼ା କରି; ଅନ୍ୟ କେଉଁଠି ପୋତିବାର ସମ୍ଭବ ନଥିଲା ତେଣୁ, ତାକୁ ଦେଖି ଡାଇରେକ୍ଟର ଅଫିସର, ଯିଏକି ଅଫିସର ଭାବେ କାର୍ଯ୍ୟରତ ଥିଲେ, ଆମ ଅଫିସକୁ ଏକ୍ସପ୍ଲାନେସନ୍ – ବା କୈଫୟତ ଦେବାକୁ ଚିଠି କରିଥିଲେ । ମୁଁ ଡିନ୍‌ଙ୍କ ସାହାଯ୍ୟ ନେଇ କିଭଳି ମରାଗଲା ଓ କି କି ବ୍ୟବସ୍ଥା ଅବଲମ୍ବନ କରି ଘୋଡ଼ାଟାକୁ ପୋତା ଗଲା ତା'ର ସବିଶେଷ ବିବରଣୀ ଲେଖି ଡାଇରେକ୍ଟର ଏନ୍.ସି.ସି.କୁ ପଠାଇ ଦିଆଗଲା ଓ ସେ ମାମଲା ସେଇଠି ବନ୍ଦ ରହିଲା ।

ସେଇ ବର୍ଷ ହିଁ, ବୋଧେ ଡାଇରେକ୍ଟର ଏନ୍.ସି.ସି. ଭାବେ କମୋଡର ବାଲସୁବ୍ରମନିୟମ ଜଏନ୍ କରିଥିଲେ ଏବଂ ମତେ ଭଲପାଇଗଲେ ୨ଟି କାରଣ ହେତୁ ।

୧ – ଡିଫେନ୍ସ ନିୟମ ଅନୁସାରେ ଜଳବାୟୁ ଟିକେ ପରିବର୍ତ୍ତନ ହେଲେ ବା ହେବାର ଲକ୍ଷଣ ଦେଖାଗଲେ । ଟିଏ ବଟାଲିଅନ୍‌ରୁ ଚିଠି ଆସିଯାଏ, ସମସ୍ତ ଏନ୍.ସି.ସି. ଅଫିସ୍ ଡାଇରେକ୍ଟର ଏନ୍.ସି.ସି. ସହିତ, ଯେତେ ଏନ୍.ସି.ଓ ଓ ଜେସିଓ ଅଛନ୍ତି ତାଙ୍କୁ ୨ପେଗ୍ ଲେଖାଏଁ ରମ ଦେବାକୁ । କିନ୍ତୁ ସେ ଚିଠି କେବଳ ଫାଇଲ୍ ହୋଇଯାଏ । ୨ ପେଗ ରମ ପାଇଁ, କିଏ ଯାଇ କେଉଁଠୁ ଆଣିବ । ତେଣୁ ସେ ଫାଇଲ୍‌ଟି ପ୍ରାୟ ୨୦୦ ପୃଷ୍ଠାର ମସ୍ତବଡ଼ ନଥିମଲାଟ ମୋ ଟେବୁଲ୍‌ର ଗୋଟାଏ କ'ଣରେ ପଡ଼ିଥାଏ

ଓ ଚିଠି ଆସିଲେ କେବଳ ଗୁନ୍ଥିବା ଛଡ଼ା ତା ଉପରେ କୌଣସି କାର୍ଯ୍ୟ କରିବା ଆବଶ୍ୟକ ନଥାଏ।

ଥରେ ଡାଇରେକ୍ଟର ଏନ୍.ସି.ସି.ଙ୍କ ପରିଦର୍ଶନ ପାଇଁ ଅଫିସ ପ୍ରସ୍ତୁତ ରହିଥାଏ। ମୋ ଟେବୁଲ୍ ଉପରେ ମଧ୍ୟ ସମସ୍ତ ଫାଇଲ୍ ଓ ଲେଜର ସୂଚୀକୁ ପ୍ରସ୍ତୁତ କରି ରଖିଥାଏ ଏବଂ ସେ ମୋଟା ଫାଇଲଟି ମଧ୍ୟ ଟେବୁଲ୍ ଉପରେ ସେମିତି ଝାଡ଼ି-ଝୁଡ଼ି କରି ରଖିଥାଏ : କମୋଡର ସୁବ୍ରମନିଅମ୍ ଅଫିସରଙ୍କ ସହିତ ସମସ୍ତ ରୁମ୍ ଦେଖିବାକୁ ଯାଇ, ଯେତେବେଳେ ମୋ ରୁମ୍‌ରେ ପଶିଲେ ତାଙ୍କ ଆଖିରେ ସେହି ମୋଟା ଫାଇଲ୍‌ଟି ପଡ଼ିଲା ଓ ସେ ନିଜେ ଫାଇଲ୍‌ଟି ପଢ଼ିଲେ ଓ ସେ ନିଜେ ଫାଇଲ୍ ଓଲଟାଇ ଦେଖି ପଚାରିଲେ ଏହାର କିଛି କାମ ହେଉଛି। ମୁଁ ମନାକଲି ଏବଂ କହିଲି ଏହାର କାର୍ଯ୍ୟକାରିତା ପାଇଁ କିଛି ନିର୍ଦ୍ଦେଶ ନାହିଁ।

ସିଏ ପଚାରିଲେ, ନିର୍ଦ୍ଦେଶ ତ କମାଣ୍ଡାଣ୍ଟ୍ ଟି.ଏ (ଟେରିଟୋରିଆଲ୍ ଆର୍ମି) ଦେଇଛନ୍ତି, ତେଣୁ ଆଉ କ'ଣ ଦରକାର।

ମୋ ଉତ୍ତର ଥିଲା ସାର୍ ୨ ପେଗ୍ ରମ୍ କିଏ ଦେବ ଏବଂ କେଉଁଠି ମିଳିବ ତା'ର କିଛି ଉଲ୍ଲେଖ ନାହିଁ। ଟି.ଏ. ବଟାଲିଅନ୍‌ରୁ କଲେକ୍‌ସନ ବା ସଂଗ୍ରହ କରାହେବ ତା ଉଲ୍ଲେଖ ନାହିଁ, ତେଣୁ ବର୍ଷ ବର୍ଷ ଧରି, ଏମିତି ଚିଠି ଆସୁଛି ଓ ଫାଇଲ୍ ହୋଇ ରହୁଛି।

କମୋଡ଼ର ସାହେବ ସଙ୍ଗେ ସଙ୍ଗେ ନିର୍ଦ୍ଦେଶ ଦେଲେ କାଲି ୫୦ ରମ ବୋତଲ ଆଣି ଷ୍ଟୋରରେ ରଖ ଏବଂ ସବୁ ୟୁନିଟ୍ ଆସି ତୁମଠାରୁ ସଂଗ୍ରହ କରିବେ।

ଆମ ଅଫିସରଙ୍କୁ ଅର୍ଡର ଦେଲେ, କାଲି ଯାଇ କଲେକ୍‌ସନ୍ କର। ତାହାହିଁ ହେଲା ଏବଂ ମୋର ଆଉ ଗୋଟିଏ କାମ ବଢ଼ିଗଲା; ମୁଁ ସେ ଅଫିସରେ ଥିବାଯାଏଁ। ଯେଉଁ ଅଫିସର ଯେତେଜଣ କର୍ମଚାରୀ (ଜେସିଓ ଓ ଏନ୍‌ସିଓ) ତାଙ୍କ ୨ ପେଗ ହିସାବରେ ବାଣ୍ଟି ଦିଆଯାଏ, ଯଦି ପୁରାବୋତଲ

ନହୋଇ ପାରିଲା, ବଳକା ୨ ରୁ ୧୦ ପେଗ ହିସାବ ହୁଏ କିନ୍ତୁ କେହି ନିଅନ୍ତି ନାହିଁ, ଯାହାକି ମୋର ଭାଗ ବୋଲି କ୍ୱାଟର ମାଷ୍ଟର ହିସାବ ଦେଇ ତାଙ୍କ ପାଖରେ ଗଚ୍ଛିତ ରଖିଥାନ୍ତି। ମୁଁ ନିଜେ ବି ଆଣେ ଓ ଅନ୍ୟ କେହି ଚାହିଁଲେ ତାଙ୍କୁ ଦେଇଦିଏ କାରଣ ତାହା ଅଧିକା ବୋଲି ଅଲଗା ରଖାଯାଇଥାଏ। ସେ ବର୍ଷ ଆଉ ଗୋଟିଏ ଘଟଣା ଘଟିଲା ଯାହାକି ଆମ କମାଣ୍ଡିଂ ଅଫିସରଙ୍କ ପ୍ରେଷ୍ଟିଜ ଉପରେ ବହୁ ରୂପରେ ଆଘାତ ଦେଲା। କଥାଟା ହେଲା- ହଠାତ୍ ଦିନେ କମୋଡର ସୁବ୍ରମନିୟମ ଅଫିସକୁ ଆସି ସିଧା ମୋ ପାଖରେ ପହଞ୍ଚିଗଲେ। ମୁଁ ହଠାତ୍ ଡାଇରେକ୍ଟର ଏନ୍.ସି.ସି.ଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲି। ଡାଇରେକ୍ଟର ହଠାତ୍ ଅଫିସକୁ ପଶି ଆସିବା ଦେଖି ଆମର ଅଫିସର କମାଣ୍ଡିଂ କର୍ଣ୍ଣେଲ ମହାନ୍ତି ମଧ; ତାଙ୍କ ରୁମରୁ ମୋ ଟେବୁଲ୍ ପାଖକୁ ଚାଲିଆସିଲେ। ସିଏ ମୋ ସାଙ୍ଗରେ କଥା ବନ୍ଦ କରି ଆମ ଅଫିସରଙ୍କୁ ଗୋଟିଏ ଚିଠି ଧରାଇ ଦେଇ କହିଲେ, ଇଏ କ'ଣ- କ'ଣ ହେଉଛି ଏ ଅଫିସରେ। ଯା ବିଷୟରେ କଣ କାର୍ଯ୍ୟ କରିଛ ଦେଖାଅ। ଏତିକି କହି ଅଫିସରଙ୍କ ରୁମକୁ ଚାଲିଗଲେ ଓ କିଛି ସମୟ ପରେ ମତେ ଡାକରା ଆସିଲା। ମୁଁ ଗଲି ମୋତେ ଚିଠିଟି ଦେଖାଇଲେ - ମୁଁ କେବଳ ଏତିକି କହିଲି - ସାର ଏହା ୧୦ ବର୍ଷର ପୁରୁଣା ମାମଲା। ଗୋଟାଏ ଶକ୍ତିମାନ ଗାଡ଼ି (ଟ୍ରକ)ର ଚେସିସ୍ ଆସିଥିଲା ଓ ତା'ର ବଡ଼ି (ଗାଡ଼ିର ଡାଲା) ତିଆରି ପାଇଁ କଲିକତା ପଠାଗଲା କିନ୍ତୁ, କଲିକତାର ଡାଲା ତିଆରି ପାଇଁ, କେଉଁ କମ୍ପାନୀକୁ ଦିଆଗଲା ତାର ଠିକଣା ମଧ ଅଫିସ ରେକର୍ଡରେ ମିଳୁନାହିଁ, ତେଣୁ ଏଲ୍.ଏ.ଓ. (ଲୋକାଲ୍ ଅଡିଟ୍ ଅଫିସର ଏହାକୁ ଅବଜେକ୍ସନ(ଆପତ୍ତି) ଦର୍ଶାଇ ଆସୁଛନ୍ତି ଓ ତା' ପ୍ରତିବର୍ଷ ଗଡ଼ି ଆସୁଛି ।

ତେଣୁ ମୋର ଉତ୍ତର ଥିଲା, ଏହା କେବଳ ଲସ ଷ୍ଟେଟ୍‌ମେଣ୍ଟ (ସରକାରୀ କ୍ଷତି) ଦେଖା ଯାଇ, ମାମଲାଟିକୁ ରଫା-ଦଫା କରି ଦିଆଯାଇପାରେ ।

ତେଣୁ ମୋ ମୁଣ୍ଡରେ ଚଡ଼କ ପଡ଼ିଲା ଡାଇରେକ୍ଟର ମତେ ସିଧା ସଳଖ ପଚାରିଲେ ତୁମର କ'ଣ ଦରକାର ଏହାକୁ ରଫାଦଫା କରିବାକୁ ।

ମୁଁ କହିଲି ସାର, ଏହାତ ଏଲ୍.ଏ.ଓ.ଙ୍କ କାମ, ତେଣୁ ତାଙ୍କୁ କହିଲେ, ମୁଁ ଏଠି ବସି ସବୁ କରିଦେବି । ତାଙ୍କର ଫାଇଲ ସହିତ ସିଏ ଆସିବା ଦରକାର । ସେ ସାଙ୍ଗେ ସାଙ୍ଗ ଏଲ.ଏ.ଓଙ୍କୁ ଫୋନ୍ କରି ସବୁକଥା କହିଲେ, ତାଙ୍କ ଭିତରେ ସବୁ କଥା ହେଲା ପରେ ଏଲ୍.ଏ.ଓ. ମୋ ସହିତ ମଧ୍ୟ କଥା ହେବାକୁ ଚାହିଁଲେ । ମୁଁ ଫୋନ୍ ଧରିଲି, ଏଲ.ଏ.ଓ. ମହାଶୟ ବଙ୍ଗାଳି ଥିଲେ ଏବଂ ମତେ କହିଲେ, ମହାନ୍ତି ବାବୁ ମୋ ପାଇଁ ୫ ଲିଟର କିରୋସିନ୍ ତେଲ ଆଉ ମଧ୍ୟାହ୍ନ ଖାଇବାଟା ବନ୍ଦୋବସ୍ତ କର । ମୁଁ ସୋମବାର ଯିବି, ମୁଁ ସେ କଥା ଡାଇରେକ୍ଟରଙ୍କୁ କହିଲି ଓ ସେ ମଧ୍ୟ ସାଙ୍ଗେ ସାଙ୍ଗେ ଆମ ଅଫିସରଙ୍କୁ ଏହାର ବନ୍ଦୋବସ୍ତ କରିବାକୁ କହିଦେଲେ ।

ଆଉ କିଛି-ମୋ ଆଡ଼କୁ ଲକ୍ଷ୍ୟ କରି କହିଲେ, ମୁଁ ସେଇଠୁ କହିଲି, କାମ ନ ସରିଲା ପର୍ଯ୍ୟନ୍ତ ଆପଣ ଆପଣଙ୍କ ଅଫିସରେ ଓ ଆମ ଓ.ସି.(ଅଫିସର କମାଣ୍ଡିଂ) ତାଙ୍କ ଅଫିସ୍‌ରେ ବସିବାକୁ ପଡ଼ିବ ଆଉ ଏଲ.ଏ.ଓଙ୍କୁ ଆଣିବା ପାଇଁ ଗାଡ଼ିର ବନ୍ଦୋବସ୍ତ କରିବାକୁ ପଡ଼ିବ ।

ସାଙ୍ଗେ ସାଙ୍ଗେ ସବୁ ଗ୍ରାଣ୍ଟ ହୋଇଗଲା(ଅନୁମତି ମିଳିଗଲା ଓ ସୋମବାର ଏଲଏଓ ଆସି, ସମସ୍ତ ଗାଡ଼ିକୁ, ଇଞ୍ଜିନ ଅଲଗା, ଚକ ଅଲଗା, ଅଧିକା ଚକ ଅଲଗା (ଚକ ସଂଖ୍ୟା-୫) ବଡ଼ି ଲଗାଲଗି ପାଇଁ ଥିବା ଲୁହା ବିମ ଏପରି ଅଲଗା ଅଲଗା କରି, ଲସ ଷ୍ଟେଟ୍‌ମେଣ୍ଟ ତିଆରି କରି, ଯାହାର ପାୱାର (ଶକ୍ତି) ଯେତେ ୫ ହଜାର ପର୍ଯ୍ୟନ୍ତ ଅଫିସର କମାଣ୍ଡି ଓ ୨୦ ହଜାର ପର୍ଯ୍ୟନ୍ତ ବୋଧେ; ଡାଇରେକ୍ଟରଙ୍କ ଶକ୍ତି, କ୍ଷତି ଭରଣା କରିବାର ଥିଲା । ତେଣୁ ସେଇ ହିସାବରେ ୫ରୁ ୬ଟି ଲସ୍ ଷ୍ଟେଟ୍‌ମେଣ୍ଟ ତିଆରି କରିବାକୁ ପ୍ରାୟ ସନ୍ଧ୍ୟା ହୋଇଯାଇଥିଲା ।

ଡାଇରେକ୍ଟର ତାଙ୍କ ଅଫିସରେ ବସିଥାନ୍ତି । ଏଲ.ଏ.ଓ. ଓ ମୁଁ ଆମ ଅଫିସରଙ୍କ ଦସ୍ତଖତ ଓ ଡାଇରେକ୍ଟରଙ୍କ ଦସ୍ତଖତ କରି, ସେ ମାମଲାକୁ ସମାଧାନ କରିଥିଲୁ । ଯାହାକି ଆମ ଅଫିସରଙ୍କୁ ଏହା ଭଲ ଲାଗିନଥିବ। ଜଣେ ରାଜ୍ୟର ସିନିୟର ମୋଷ୍ଟ ଅଫିସରଙ୍କ ସହିତ ମୋର ସିଧା ସଳଖ କଥା ତାଙ୍କୁ ଭଲ ଲାଗୁନଥିବା ଭଳି ମତେ ଲାଗୁଥିଲା । ପରବର୍ତ୍ତି ସମୟରେ ତାହା ପ୍ରକାଶ ପାଇଗଲା ।

ଦିନେ ହଠାତ୍ ମୁଁ ଅଫିସରେ ବସିଛି, ପିଅନ ମହାନ୍ତି ମତେ ଗୋଟିଏ ଡାକ ଧରାଇ ଦେଇ, ହସି ହସି ରେଜିଷ୍ଟରରେ ଦସ୍ତଖତ କରିବାକୁ କହିବାରୁ, ଖୋଲାଚିଠିଟି ପଢ଼ି ଦେଖେତ ତା ମୋର ବଦଳି ଅଡ଼ର ଥିଲା । ମୁଁ କିଛି ନ କହି ସିଧାଉଠି ଆଲମାରି ଚାବିନେଇ, ଡ୍ରରେ ଚାବି ରଖି ସାଇକଲ ଧରି ଘରକୁ ଆସିଲି, ଆସିଲା ବାଟରେ ହସପିଟାଲ ଯାଇ, ଗତ ରାତିରେ ୩ ଚାରିଥର ଝାଡ଼ା ଆଉ ଜର ହୋଇଥିଲା କହି ଗୋଟିଏ ଆଉଟ ଡୋର ଟିକଟ କରି ଆଣିଲି ଭାଗ୍ୟ ବଶତଃ ମୁଁ ସେ ଦିନ ଉପସ୍ଥିତି ଖାତାରେ ଦସ୍ତଖତ କରି ନ ଥିଲି ।

ତା ପରଦିନ ଡାକ ଧରି ମୋ ଭଡ଼ାଘରେ ପହଞ୍ଚିଥିଲେ ଆଉ ଜଣେ ଲସ୍କର । ତାଙ୍କ ସାମ୍ନାରେ ଚିଠିକୁ ଚିରି ତାଙ୍କୁ ଧରାଇ ଦେଇ କହିଲି ଓ.ସି.ଙ୍କୁ ଭୁବନେଶ୍ୱରରୁ (ଓଡ଼ିଶାରୁ) ନ ତଡ଼ିଲା ପର୍ଯ୍ୟନ୍ତ ମୁଁ କୁଆଡ଼େ ଯିବାର ନାହିଁ। ଯାଅ ଏତିକି କହିଦେବ ସେ ତାଙ୍କର ବେଡ଼ିଂ ବାନ୍ଧନ୍ତୁ ।

ତା ପରେ ମୁଁ ଆଉ ସେ ଅଫିସକୁ ଯାଇନି କି କଟକ ଗ୍ରୁପରେ ଯଏନ୍ ନକରି, ତାଙ୍କର କିପରି ବଦଳୀ ହେବ ତା ପାଇଁ ଡି.ଜି..ଏନ୍.ସି.ସି ନୂଆ ଦିଲ୍ଲୀ ଓ ଓଡ଼ିଶାର ଏନ୍.ସି.ସି. ଡାଇରେକ୍ଟର ଓ ତାଙ୍କର ମୂଳ (ପେରେଣ୍ଟ ୟୁନିଟ୍) ରିମାଉଣ୍ଟ ଏଣ୍ଡ ଭେଟେରିନାରୀ ଗ୍ରୁପ୍‌କୁ ଘନ ଘନ ଚିଠି ଲେଖି; ତାଙ୍କୁ ଓଡ଼ିଶା ଅଫିସରୁ ଅନ୍ୟତ୍ର ବଦଳି ପାଇଁ ଚିଠି ଲେଖିଲି।

ବଦଳି କରିବାର କାରଣ ସରକାରୀ ଧନ୍ ଅପହରଣ କରିବା। ଓଡ଼ିଶା ସରକାରଙ୍କୁ ମିଥ୍ୟାକଥା କହି, ନିଜର ଖ୍ୟାତି ବଢ଼ାଇବା ଓ ସରକାରୀ ଧନ କ୍ଷତି କରିବା ଏପରି ଅନେକ। ସେଥିରୁ ଗୋଟିଏ ହେଲା :-

ତାଙ୍କର ଗୋଟିଏ ମାଇ ଆଲ୍‌ସିସିଏନ୍ କୁକୁର ଥିଲା ଏବଂ ସେ ଗରମ ହେବାରୁ, ସେତେବେଳର ଗଭର୍ଣ୍ଣରଙ୍କ ପୁଅକୁ ହାତ ବାରସୀ କରି (ଗଭର୍ଣ୍ଣର ଶ୍ରୀଯୁକ୍ତ ଭଗବତ ଦୟାଲ୍ ଶର୍ମା) କଟକରୁ ପୋଲିସ କୁକୁର ଆଣିବାକୁ ସ୍ଥିର ହେଲା, ହେଲେ କୁକୁରଟି ସେତେବେଳେ କୋରାପୁଟରେ ଥିଲା। ତେବେ ସେଠାକୁ ହେଲିକେପ୍ଟର ପଠାଇ, କୁକୁର ଆଣି ତା ସହିତ ପ୍ରଜନନ ପ୍ରକ୍ରିୟା ପାଇଁ ସୁବନ୍ଦୋବସ୍ତ କରାଗଲା। କିନ୍ତୁ ଦୁଃଖର କଥା କୁକୁରଟି ଛୁଆ ରଖିବା ଅବସ୍ଥାରେ ନଥିଲା। ଶ୍ରୀଯୁକ୍ତ କର୍ଣ୍ଣଲ ସାହେବ ଫସିଗଲେ ତାଙ୍କର ଭୁଲ ପାଇଁ, ଅନ୍ୟଗୁଡ଼ିଏ କଥା ବି ଥିଲା – ତା କିନ୍ତୁ ମୋର ଏବେ ମନେ ଗଡୁନାହିଁ। ଏଥିପାଇଁ ବୋଧେ ବେଶ୍ କିଛିଦିନ ଲାଗିଗଲା। ତେବେ ତାଙ୍କର କଲିକତାକୁ ବଦଳି ହୋଇଗଲା ଏବଂ ବିନା ଟ୍ରାନ୍‌ଜିଟ୍‌ରେ; ମାନେ ଚିଠି ପାଇବା ୩ ଦିନ ଭିତରେ ଭୁବନେଶ୍ୱର ଛାଡ଼ିବାକୁ ନିର୍ଦ୍ଦେଶ ଆସିଲା। ତାଙ୍କ ସହିତ ବିଶାଖାପାଟନାମ୍ ରେଳଷ୍ଟେସନରେ ଦେଖା ହୋଇଥିଲା। କାରଣ ସେ ଦିନ କ୍ୟାମ୍ପ ପିଲାମାନଙ୍କୁ ନେଇ (ଏନ୍.ସି.ସି.) କ୍ୟାମ୍ପ୍ ଜି. ଉଦୟଗିରିରୁ ବିଶାଖାପାଟନାମ୍ ବନ୍ଦରକୁ ଯାଉଥିଲୁ ବୁଡ଼ା ଜାହାଜ ଦେଖିବା ପାଇଁ।

ତା'ପରେ ମୋର ପାଳି, ରିଲିଭ ଅର୍ଡର ଓ ବଦଳି ଅର୍ଡରକୁ ଚିରି, ଲସ୍କର ହାତରେ ଧରାଇ ଦେଇଥିଲି। ତେଣୁ ମତେ ଯାଇ କଟକ ଗ୍ରୁପ୍‌ରେ ୨ୟ ବାର ଜଏନ୍ କରିବାକୁ ଅସୁବିଧା ମନେକଲି। କିନ୍ତୁ କିଛିଦିନ ପରେ ମତେ ଡେପୁଟି ଡିପିଆଇ ଶ୍ରୀଯୁକ୍ତ ମିଶ୍ର ଡକାଇ ପଠାଇଲେ ଏବଂ ମୁଁ ମୋ ପାଖରେ କିଛି କାଗଜପତ୍ର ନଥିବା, କହିବାରୁ ସେ ସିଧାସଳଖ ଯାଇ, ଯଏନ୍ କର, କିଛି କାଗଜ ପତ୍ର ଦରକାର ନାହିଁ, ଯାହା ଦରକାର ପଛେ ଦିଆଯିବ କହିବାରୁ ମୁଁ ତା' ଆରଦିନ ଯାଇ, କଟକ ଗ୍ରୁପ୍‌ରେ ପହଞ୍ଚିଲି।

ସେତିକିବେଳକୁ ମହାପାତ୍ର ବାବୁ ଅବସର ନେଇ ସାରିଲେଣି । ମିସ୍ ମହାନ୍ତି କମ୍ପୋଜିଟ୍ ଟେକିନିକାଲ୍ କମ୍ପାନୀକୁ ବଦଳି ହୋଇଗଲେଣି । ଏବଂ ଜଣେ ବେହେରା ହେଡ୍‌କ୍ଲର୍କ ଭାବେ ଯଏନ୍ କରିଛନ୍ତି, ଯିଏକି ପାରଳାଖେମଣ୍ଡିର ଇଣ୍ଡିପେଣ୍ଡେଣ୍ଟ୍ କମ୍ପାନୀ ଓ ପରେ ୫୬ଆର୍ ଭାବେ ନାମିତ ଏନ୍.ସିସି. ଅଫିସରେ କିରାଣି ଥିଲେ ।

ମୁଁ ପହଞ୍ଚି ଦେଖିଲି ମୋ ପାଇଁ ଥିବା ଟେବୁଲ୍ ଉପରେ ମୋ ଜଏନିଂ ରିପୋର୍ଟ ଟାଇପ୍ ହୋଇ ଥୁଆହୋଇଛି । ପୁରୁଣା ଲସ୍କର, ପିଅନ ଓ ୱାଚ୍‌ମେନ୍ ସବୁ ଖୁସି ହୋଇଗଲେ ମୋତେ ଦେଖି । ଆଉ ମୋର ପୁରୁଣା ବନ୍ଧୁ, ଯିଏକି ମୋର ବିପକ୍ଷରେ ସବୁବେଳେ ବିଷ ଉଦ୍‌ଗାରଣ କରନ୍ତି, ସିଏ ମତେ ପାଛୋଟି ନେଇ ମୋ ଟେବୁଲ୍ ପାଖରେ ବସାଇ, ଜଏନିଂ ରିପୋର୍ଟକୁ ଦସ୍ତଖତ କରିବାକୁ କହିବାରୁ, ମୁଁ ଦସ୍ତଖତ କରିଦେଲି ଓ ସେ ତାକୁ ନେଇ ବଡ଼ବାବୁ (ହେଡ୍ କ୍ଲର୍କ)ଙ୍କୁ ଦେଇ ନିଜ କାମରେ ଲାଗିଲେ । ମୁଁ ଦେଖିଲି ମୋତେ ସେହି ପୁରୁଣା ବିଭାଗ (G) ଟ୍ରେନିଂ ଦିଆହୋଇଛି । ଢିଙ୍କି ଯେଉଁଠିକୁ ଗଲେ ତ ଧାନ କୁଟିବନା – ତେବ କାହାକୁ କିଛି କହିବା ଆବଶ୍ୟକ କ'ଣ ? ସାମଲ ବାବୁଙ୍କ ଗୋଟିଏ ରାଗ, ତାଙ୍କ ବିପକ୍ଷରେ କାହିଁକି ମୁଁ ସ୍ୱର ଉତ୍ତୋଳନ କଲି । ମୁଁ ପୁରୀରେ ଥିବା ସମୟରେ ଶୁଣିବାକୁ ପାଇଲି; ମୋ ଠାରୁ ଜୁନିୟର ହୋଇଥିଲେ ମଧ୍ୟ କଟକ ଗ୍ରୁପ୍‌ର ସାମଲ ବାବୁ ଓ ମିସ୍ ମହାନ୍ତି ଏବଂ ୯ମ ଓଡ଼ିଶା ବଟାଲିଅନ୍‌ର ଜଣେ ଜ୍ୟୋତିଷଙ୍କୁ ଅଫିସିଏଟିଂ ପ୍ରମୋଶନ ଦିଆହୋଇଛି ଓ ମୋ ବେଳକୁ ପୁରୀକୁ ବଦଳି କରି ଜଣେ ମିଲିଟାରୀ ଫେରନ୍ତାଙ୍କୁ ବ୍ରହ୍ମପୁରରେ ସେଇ ପ୍ରୋମସନ ଦିଆଯାଇଥିଲା । ତେଣୁ ତାଙ୍କର ରାଗ ସୁଝିବା ପାଇଁ ସେ ସବୁବେଳେ ଚିନ୍ତା କରୁଥିଲେ । ତେବେ ସିଏ ମୋତେ ନେଇ, ଷ୍ଟେସନ ପାଖରେ ଥିବା ସରକାରୀ କ୍ୱାଟରରେ ରଖିବା ହୋଟେଲ୍‌ରେ ପିଇବା–ଖାଇବା ସବୁ ନିଜ ହାତରୁ କରନ୍ତି ଏବଂ କିଛିନା କିଛି ମୋର ଭୁଲ ଧରିବାକୁ ଚେଷ୍ଟା କରନ୍ତି ଓ ମଝିରେ ଥାଇ ନିଜେ ଧରାପଡ଼ନ୍ତି ନାହିଁ । ମୁଁ ଯେତେବେଳେ ଏନ୍.ସି.ସି.

ଏସୋସିଏସନ୍‌ରେ ପ୍ରେସିଡେଣ୍ଟ୍ ଭାବେ କାର୍ଯ୍ୟ କରୁଥିଲି। ସେତେବେଳେ ମୁଁ କିଛି ଚିଠି ସରକାର ଏବଂ କଟକରେ ଥିବା ସେକ୍ରେଟାରୀଙ୍କ ପାଖକୁ ଦିଏ; ମତେ; ଉତ୍ତର ଦେବାପାଇଁ, ମୋ ଠିକଣା ଲେଖା ହୋଇଥିବା ପୋଷ୍ଟକାର୍ଡ ମଧ୍ୟ ଦେଇ ଆସିଥାଏ। ଥରେ କିଛି ବିଷୟ ନେଇ ଚିଠି ଲେଖିଥିବାରୁ ମୋ ହାତଲେଖା ଠିକଣା ଥାଇ ପୋଷ୍ଟକାର୍ଡରେ ଲେଖି ଜଣାଇ ଦେଲେ ଯେ, "ତୁମେ ଆଉ ପ୍ରେସିଡେଣ୍ଟ ପୋଷ୍ଟରେ ନାହିଁ, ତେଣୁ ଏପରି ଚିଠି ଆଉ ଲେଖ ନାହିଁ। ମୋର ଯାହା ମନେ ଅଛି, ମୁଁ ସରକାରଙ୍କୁ ଅଫିସ ସୁପରିନ୍‌ଟେଣ୍ଡେଣ୍ଟ ଓ ଏଷ୍ଟାବ୍ଲିଶମେଣ୍ଟ ଅଫିସର ପାଇଁ ପ୍ରସ୍ତାବ ଦେଇଥିଲି। ଯେଉଁଥିରେ କି ଏଷ୍ଟାବ୍ଲିଶମେଣ୍ଟ ଅଫିସରଙ୍କୁ ଡି.ଡି.ଓ କଲେ; ଏନ୍.ସି.ସି. ଅଫିସ ଗୁଡ଼ିକରେ ଏତେ ଏ.ଜି. ଅଡିଟ୍‌ରେ ଅବ୍‌ଜେକ୍‌ସନ ବାହାରିବ ନାହିଁ। କି ୨-୩ ବର୍ଷ ପାଇଁ ଆସିଥିବା ପ୍ରତିରକ୍ଷା ବିଭାଗର ଅଫିସରଙ୍କ ପଛରେ ଦଉଡ଼ିବାକୁ ପଡ଼ିବ ନାହିଁ। ଯାହାକି ସେଇଠି ହିଁ କଟିଗଲା, ଆମ ଏସୋସିଏସନ୍ ଅଫିସରେ।

ସେ ଯାହା ହେଉ କାମ ଠିକ୍ ଚାଲିଲା- ହେଲେ ସେଠି ଗ୍ରୁପ୍ କମାଣ୍ଡରଙ୍କୁ ସପ୍ତାହରେ ଦିନେ ଓଳିଏ ଦେଖା ହେଲେ ଯଥେଷ୍ଟ ତେଣୁ ନୋ ଟେନସନ। ହେଲେ ଦରମା ପ୍ରାୟ ଦୁଇ ତିନିମାସ ହେଲା ପାଇନଥିଲି, ଅଫିସକୁ ଭୁବନେଶ୍ୱର ଆସିବ ଯିବା ବି ଥିଲା, ତେବେ ତାକୁ ସମ୍ଭାଳିବା ପାଇଁ ଜିପିଏଫ୍ ଦରଖାସ୍ତଟିଏ ଦେଲି। ହେଡ୍ କ୍ଲର୍କଙ୍କ ତାଗିଦ; ତୁମେ ଯେତେଦିନ ବାହାରେ ବୁଲିଲ, ତା ପାଇଁ ଛୁଟି ଦରଖାସ୍ତ ଦିଅ। ନଚେତ୍ ସେ ଦିନଗୁଡ଼ିକର ଦରମା ହୋଇପାରିବ ନାହିଁ। ମୁଁ କେବଳ ହଁ-ହଁ କରି ସମୟ ଗଡ଼ାଉଥାଏ - ସମୟ ଗଡ଼ି ଚାଲିଥାଏ। ମୁଁ ୨୯.୧୦.୮୫ରୁ ଘୋଡ଼ ସବାରୀ ବାହାନୀ ଛାଡ଼ିଲି। ମାସେ ଉପରେ ବାହାରେ ବୁଲିଲି ଏବଂ ବର୍ଷ ଶେଷ କି ଆରମ୍ଭରେ ଯାଇ କଟକ ଗ୍ରୁପ୍‌ରେ ୨ୟ ଥର ପାଇଁ ଯଏନ୍ କଲି। ଏ ଭିତରେ ହଟାତ୍ ଏନ୍.ସି.ସି. ଡାଇରେକ୍ଟରରୁ କମୋଡର ବାଲସୁବ୍ରମନ୍ୟମ ସିଧା ସଳଖ ମୋ ସାଙ୍ଗରେ କଥା ହେବାକୁ କହିବାରୁ

ହେଡ୍‌କ୍ଲର୍କ ବେହେରା ମତେ ଡକେଇ ପଠେଇଲେ ଓ ମୁଁ ଯାଇ, ଟେଲିଫୋନ୍ ଧରିଲି ।

– ସାର୍ ନମସ୍କାର

– ଓକେ – ମହାନ୍ତି ଆପଣ ଜି.ପି.ଏଫ୍ (ମାଗିଥିଲେ) ମଙ୍ଗାଯାଥା ।

– ହଁ ସାର୍ ।

– ସେ ଚିଠି ଦିଲ୍ଲୀ ଡି.ଜି.ଙ୍କ ଅଫିସକୁ କିପରି ଗଲା । (ହିନ୍ଦିରେ)

– ମୁଁ ସାର କହିପାରିବିନି, ଏଠାରେ ଜଣେ ସିନିଅର କ୍ଲର୍କ ଡାଇରି – ଡିସ୍‌ପାଚ ସେକସନରେ କାମ କରନ୍ତି । ସେ କିଛି କରିଥିବେ ।

– ଆଛା ତୁମ ଗ୍ରୁପ୍ କମାଣ୍ଡର କାହାନ୍ତି ।

– ସିଏ ସାର ସପ୍ତାହକୁ ଦିନେ ଓଳିଏ ଆସନ୍ତି । ଆଉ କେତେବେଳେ ନିଜ କାମ ଥିଲେ ଆସି କରାଇ ନିଅନ୍ତି ।

– ହଉ, ହେଡ୍‌କ୍ଲର୍କଙ୍କୁ ଫୋନ୍ ଦିଅ (ବେହେରା ବାବୁ; ଏସ୍. ଏସ୍ ମହାପାତ୍ରଙ୍କ ପରେ ।)

– ଠିକ୍ ଅଛି ସାର୍ ।

– ହେଡ୍ କ୍ଲର୍କ ଫୋନ ଧରିଲେ, ବେଶ କିଛି ସମୟ କଥାବାର୍ତ୍ତା ପରେ ।

– କାଲି ୧୧ଟା ବେଳେ ମୁଁ ଅଫିସରେ ପହଞ୍ଚିବି । ଅଫିସ ପରିଦର୍ଶନ କରିବା ସଙ୍ଗେ ସଙ୍ଗେ କେଉଁ କାରଣରୁ ମହାନ୍ତି ବାବୁଙ୍କର ଜିପିଏଫ୍ ଦରଖାସ୍ତ ଦିଲ୍ଲୀ ଗଲା, ତାକୁ ମଧ୍ୟ ଅନୁଧ୍ୟାନ କରିବି । ତୁମ ଗ୍ରୁପ୍ କମାଣ୍ଡର ଓ ଏଡମ୍ ଅଫିସରଙ୍କୁ ଜଣାଇ ଦିଅ ।

– ଫୋନ୍ ରଖିବାର ଶବ୍ଦ ।

ବଡ଼ ବାବୁଙ୍କ ମୁଣ୍ଡ ଗରମ। କାଲି ସକାଳୁ ଡାଇରେକ୍ଟର ଆସିବେ ତେଣୁ ସବୁ ଟିପ୍‌ଟପ ରଖିବାକୁ ହେବ - ସମସ୍ତଙ୍କୁ ଡାକି କହିଦେଲେ। ସବୁ ଫାଇଲ୍ ଓ ରୁମ୍ ଝଡ଼ା-ଝଡ଼ି କରି ରଖ। ସବୁ ରୁମକୁ ବି ଯାଇପାରନ୍ତି। ଡାଇରି ଓ ଡିସପାଚ ରେଜିଷ୍ଟର ଠିକ୍ ରଖ ସବୁ ପ୍ରକାର ପ୍ରତିରକ୍ଷା ବିଭାଗର ଆଦେଶ। ଏଡମ ଅଫିସରଙ୍କୁ କହି - ଗ୍ରୁପ୍ କମାଣ୍ଡରଙ୍କୁ ଟେଲିଫୋନ୍ ଦ୍ୱାରା ଜଣାଇ ଦେବା ସଙ୍ଗେ ସଙ୍ଗେ ଗୋଟିଏ ସୂଚୀ (ଅନୁଧ୍ୟାନର) କରି ଗ୍ରୁପ୍ କମାଣ୍ଡରଙ୍କ ପାଖକୁ ପଠାଇ ଦିଆଗଲା।

ତା' ପରଦିନ ସକାଳୁ ସକାଳୁ ମୁଁ ଯାଇ ପ୍ରଥମେ ଅଫିସରେ ପହଞ୍ଚି। ଟେବୁଲ୍, ଆଲମିରା ସବୁ ସଫା କରି ବସିଥାଏ। କୌଣସି ଫାଇଲ୍ ବାହାର କରି କାମ କରିବା ପରିସ୍ଥିତିରେ ନଥାଏ।

ଡିଡିଜି, କମୋଡର ସୁବ୍ରମଣ୍ୟମ ଆସିଲେ ଓ ମତେ ପ୍ରଥମ ପ୍ରଶ୍ନ ଥିଲା।

- କ'ଣ ମହାନ୍ତି ଏ କାହାର କାମ - ଏ ସବୁ ଭୁଲ୍ କାହିଁକି ହେଉଛି।

- ମୁଁ ସିଧା ସଳଖ କହିଦେଲି, ଏଠି ସମସ୍ତେ ଅଫିସର। ସାର, ସାତ ଦିନରେ ଥରେ ଅଧେ କମାଣ୍ଡର ଅଶାନ୍ତି - ଏଡମ୍ ଅଫିସର ଯଦି ଚ ଆସନ୍ତି, ସିଏ ଅଧିକ ନିଜସ୍ୱ କାମ କରନ୍ତି। ଏତିକି କହିଛି ଗ୍ରୁପ୍ କମାଣ୍ଡର ଠିଆହୋଇ, ମୋ ଉପରେ ଖଡ୍‌ଗ ହସ୍ତ, କ'ଣ କହିଲ କ'ଣ କହିଲ।

- ବାସ କମାଣ୍ଡର ବାସ। ତାଙ୍କୁ କହିବାକୁ ଦିଅ। ମୁଁ ଆଗରୁ ବି ଏ କଥା ଶୁଣିଚି। ତୁମ ଗ୍ରୁପ୍‌ର ୫ ଜଣ ଅଫିସର ମୋ ଅଫିସରେ କେହିନା କେହି ଉପସ୍ଥାନ ପକାନ୍ତି। ସିଏ କହିଦେଲେ କ'ଣ ମୁଁ ବିଶ୍ୱାସ କରିଯିବି। କହି ଉଠିଲେ ଡେପୁଟି ଡାଇରେକ୍ଟର ସୁବ୍ରମଣିୟମ୍ ସାର୍

ପୁଣି – ମି. ମହାନ୍ତି, ତୁମେ ଯାଅ ଗାଡ଼ିରେ ବସ । ମୁଁ କିଛି ବୁଝି ପାରିଲିନି । ବୋକାଙ୍କ ଭଳି ଠିଆ ହୋଇ ଡାଇରେକ୍ଟରଙ୍କ ମୁହଁକୁ ଦେଖୁଥାଏ । ତେଣୁ ତାଙ୍କ ସଙ୍ଗରେ ଆସିଥିବା ଡେପୁଟି ଡାଇରେକ୍ଟର କହିଲେ :-

ମି. ମହାନ୍ତି, ଡାଇରେକ୍ଟର ସାହେବ କହିଲେ, ତୁମେ ଯାଇ ଗାଡ଼ିରେ ବସ । ଆମେ ଯେଉଁ ଗାଡ଼ିରେ ଭୁବନେଶ୍ୱରରୁ ଆସିଛୁ ।

– ସାର୍ !

– ମୁଁ କିଛି ନ କହି ସିଧା ରୁମକୁ ଆସି, ଆଲମିରା ଚାବି ପକାଇ, ଟେବୁଲ୍ ଡ୍ରରେ ରଖି – ସାମଲ ବାବୁଙ୍କୁ କହିଦେଲି ଚାବି ଏଠାରେ ରହିଲା । ବାସ୍ – ଡାଇରେକ୍ଟର ଆସିଥିବା ଗାଡ଼ି ପାଖକୁ ଯାଇ, ଡ୍ରାଇଭରଙ୍କ ସଙ୍ଗେ ଗପୁଥିଲି । ୨ ଜଣ ଯାକ ଅଫିସର, ଅଫିସ ଛାଡ଼ି ବାହାରିଲେ ଓ ଆସି ପଛ ସିଟ୍‌ରେ ବସିବାକୁ ଗଲେ ଓ ମତେ ବସନ୍ତୁ କହିବାରୁ, ଆଗରୁ ଖୋଲାଥିବା ଫ୍ରଣ୍ଟଡୋରକୁ ଆଡ଼େଇ, ମୁଁ ଆଗରେ ବସି ଡୋର ଦେଲି; ଗାଡ଼ି ଆମ୍ବାସାଡର ଆଗକୁ ଗଡ଼ିଲା ।

ଗ୍ରୁପ୍‌ର ୨ ଜଣଯାକ ଅଫିସର ଅଫିସ୍ ବାରଣ୍ଡାରେ ଠିଆ ହୋଇ ଅଭିବାଦନ ଜଣାଇଲେ ।

ଗାଡ଼ି ଚାଲିଛି; ୨ ଜଣ ଅଫିସର, କଟକର ବିଭିନ୍ନ ଅଫିସ ଓ ଅଫିସରଙ୍କ କଥା ପକାଇ, ତାଙ୍କର କାର୍ଯ୍ୟଶୈଳୀ ଉପରେ ମଧ୍ୟ ଆଲୋଚନା ପର୍ଯ୍ୟାଲୋଚନାରେ ବ୍ୟସ୍ତ ଥିବାବେଳେ ଗାଡ଼ି କେତେବେଳେ ଡିଡିଜି ଅଫିସରେ ଲାଗିଲା, ମୁଁ ଜାଣି ପାରିଲି ନାହିଁ ।

ଦୁଇଜଣ ଯାକ ଅଫିସର ସିଧା ଓହ୍ଲାଇ, ନିଜ ନିଜ ଅଫିସ ରୁମ୍‌କୁ ଚାଲିଲେ । ମୋ ସହିତ କେହି କିଛି କଥା ନ ହୋଇ ଯିବାରୁ ମୁଁ ମଧ୍ୟ ଆଶ୍ଚର୍ଯ୍ୟ ହେଲି । ୪ଟା ବାଜିଲା, ତେଣୁ ମୁଁ ଡାଇରେକ୍ଟରଙ୍କ ଷ୍ଟେନୋଙ୍କୁ କହି ଘରକୁ ପଳାଇ ଆସିଲି ।

ତା ପରଦିନ। ଡାଇରେକ୍ଟର ଅଫିସ ୧୦ଟା ପୂର୍ବରୁ ଖୋଲିଯାଏ। ମୁଁ କିନ୍ତୁ ଠିକ୍ ୧୦ଟା ବେଳେ ଯାଇ ସେ ଅଫିସରେ ପହଞ୍ଚି; ଡାଇରେକ୍ଟରଙ୍କ ଅଫିସରେ ଥିବା; ପ୍ରତିରକ୍ଷା ବାହିନୀର ଷ୍ଟାଫ୍‌ଙ୍କ ପାଇଁ ଉଦ୍ଦିଷ୍ଟ କ୍ୟାଣ୍ଟିନ ଆଗରେ ବୁଲୁଥିଲି, ଡାଇରେକ୍ଟର ଆସି ପହଞ୍ଚି ଗଲେ। ମୁଁ ବୁଲୁଥିବା ଦେଖି ପଚାରିଲେ-

- କ'ଣ କରୁଚ ଏଠି (କ୍ୟା କର ରହେ ହୋ)

- ଆପଣ ତ ସାର ମୋତେ କିଛି କହିନାହାନ୍ତି - କେଉଁଠି କ'ଣ କରିବି କହିଲେ ସିନା, ଅଫିସ ଭିତରକୁ ଯିବି, ସେମିତି ଯାଇ କେଉଁଠି ବସିବି। (ହିନ୍ଦୀରେ)

- ଠିକ୍ ଅଛି, ଠିକ୍ ଅଛି - ଆସ (ହିନ୍ଦୀରେ)

- ମୁଁ ପଛେ ପଛେ ଚାଲିଲି, ଦୋ ମହଲାକୁ ଯିବା ସିଡି ମଝିରେ ଗ୍ୟାରେଜ ଉପରେ (ପୋର୍ଟିକୋ) ଗୋଟିଏ ରୁମ୍ ଅଛି। ମତେ ସେଠାକୁ ନେଇ ଦେଖାଇଲେ ୪ ଜଣ କିରାଣି କାଗଜ ଦେଖୁଛନ୍ତି। ଏଠି ତାଙ୍କୁ ସାହାଯ୍ୟ କର।

ସାର୍, କହି ମୁଁ ଭିତରୁ ଗଲି, ଦେଖିଲି ୪ ଜଣ ଯାକ ବସି ପୁରୁଣା ଫାଇଲ୍ କ୍ୟାସବୁକ୍ ରୁ କ'ଣ ସବୁ (ନୋଟ୍) ଟିପୁଛନ୍ତି ବା ଲେଖି ରଖୁଛନ୍ତି। ମୁଁ ଦେଖି କହିଲି, ଏହା କେଉଁ କେଉଁ ବର୍ଷର ଶୁଣିଲି ଯେ କେଉଁ ୨୦ ବର୍ଷ ତଳର, ଟ୍ରେଜେରିରୁ ଉଠାହୋଇଥିବା ପଇସା, କେତେ ଜଣକୁ ଦିଆ ହୋଇଯାଇଛି ଓ କେତେଜଣଙ୍କ ପଇସା ରହିଯାଇଛି। ସେଗୁଡ଼ିକ ଲେଖି ରଖୁଛୁ ଏବଂ ସେ ଟଙ୍କା ଆଉ ଦିଆଯାଇ ପାରିବ ନାହିଁ ତାକୁ ଟେଜେରୀରେ ଡିପୋଜିଟ୍ ବା ପୈଠ କରିବାକୁ ପଡ଼ିବ। ମୁଁ ଦେଖିଲି ଏ ଚାରିଜଣ କିରାଣି ଯଦି ଏଭଳି ବାଛି-ବାଛି ଲେଖି ଚାଲିଥିବେ ତେବେ ୪ ବର୍ଷ ଲାଗିବ।

ତେଣୁ ମୁଁ ଡାଇରେକ୍ଟରଙ୍କୁ ଯାଇ କହିଲି, ଗୋଟି ଗୋଟି କରି ୪ ଜଣ କାଗଜ ଖେଳାଇ କିଛି ଲାଭ ନାହିଁ। ମତେ ଜଣେ କିରାଣି ଦିଅନ୍ତୁ ମୁଁ

ଚେଷ୍ଟା କରିବି ୧୫ ଦିନ ଭିତରେ କାମ ସାରିଦେବି । ଶେଷରେ ସେଇଆ ହେଲା, ବ୍ରହ୍ମପୁର ଓ କଟକରୁ ଆସିଥିବା ୨ ଜଣ କିରାଣିଙ୍କୁ ଫେରାଇ ଦିଆଗଲା, ଏକା ମୁଁ ପ୍ରତିଦିନ କିଛି କିଛି ଟଙ୍କା, ଫାଇଲ ଦେଖି - ପୁରୁଣା ଖର୍ଚ୍ଚ ନ ହୋଇ ପଡ଼ି ରହିଥିବା ଟଙ୍କାକୁ ବିଲ ନଂ ଦେଖି ଏକ ଆର୍ଥିକ ବିବରଣୀ ଲିପିବଦ୍ଧ କରି, ସେ ଟଙ୍କା ଟ୍ରେଜେରୀ ଚାଲାନ କରି ସରକାରଙ୍କୁ ଫେରାଇ ଦେବାର ବନ୍ଦୋବସ୍ତ କଲି ।

ସମସ୍ତ ଟଙ୍କା ଟ୍ରେଜେରୀରେ ପୈଠ କରିବା ପାଇଁ ମୋତେ ପ୍ରାୟ ୧୦ ଦିନ ସମୟ ଲାଗିଲା । ଆସ୍ତେ ଆସ୍ତେ ପୈଠ କରୁଥିବାରୁ କଷ୍ଟ ମଧ୍ୟ ଲାଗୁନଥିଲା ବରଂ ଖୁସି ଲାଗୁଥିଲା । ଶେଷରେ ସବୁ ଟଙ୍କା ହିସାବ କରି - ସମସ୍ତ ଗଡ଼ି ଆସୁଥିବା ଟଙ୍କା ଟ୍ରେଜେରୀରେ ପୈଠ କରିଦିଆଗଲା । ତେଣୁ ଏଜିକୁ ମଧ୍ୟ ଠିକ୍ ସମୟରେ ଜଣାଇ ଦେଇ ତାଙ୍କ ଆପତ୍ତିକୁ ଏଡ଼ାଇ ଦିଆଗଲା ।

ଭୁବନେଶ୍ୱରକୁ ଆସିବା ୧୨-୧୪ ଦିନ ହୋଇ ସାରିଥିଲା । ମୁଁ ମୋର ସେଇ ଡାଇରେକ୍ଟରଙ୍କ ଅଫିସର ଏକାଉଣ୍ଟ କରୁଥିବା କିଛି ପୁରୁଣା ଖାତାଗୁଡ଼ିକୁ ଦେଖି - ସେଇ-ସେଇ ବିଲ୍‌ରେ କେତେ କେତେ ଟଙ୍କା ଡିପୋଜିଟ୍ କରାଗଲା - ଲେଖି ଚାଲିଥାଏ; କାରଣ ପୁଣି ଯଦି କିଏ ପଚାରେ ବା ଧରପଗଡ଼ ହୁଏ ତେବେ ସାଙ୍ଗେ ସାଙ୍ଗେ ତାର ଉତ୍ତର ଦେଇହେବ ଆଉ ଫାଇଲ୍ ଖୋଲିବାକୁ ପଡ଼ିବନି । ତା ସହିତ ଗୋଟିଏ ବିବରଣୀ (Statement) ମଧ୍ୟ କରି ଫାଇଲ୍‌ରେ ରଖିବା ପାଇଁ ଚିନ୍ତା କରୁଥାଏ । ଏହି ସମୟରେ ଡେପୁଟି ଡି.ଜି. ଶ୍ରୀ ବାଲ୍ ସୁବ୍ରମନ୍ୟମ୍ ଆସି କେତେବେଳେ ଦୁଆର ମୁହଁରେ ଠିଆ ହୋଇଥିଲେ ମୁଁ ଜାଣି ପାରିନଥିଲି । ମୁଁ ମୁହଁ ଟେକି ଦେଖିଲା ବେଳକୁ ସେ କହିବାକୁ ଲାଗିଲେ । "ଫିର କ୍ୟା କର ରହେ ହୋ"- ପୁଣି କଣ କରୁଛ । ମୁଁ ଉତ୍ତର ଦେଲି :

ସାର ଗୋଟିଏ ଷ୍ଟେଟମେଣ୍ଟ ପେପର ତିଆରି କରି କେସ ବୁକ୍ ଓ ଫାଇଲ୍‌ରେ ରଖିଦେଲେ; ଭବିଷ୍ୟତରେ ଆଉ ବେଶି ଖୋଜିବାକୁ ପଡ଼ିବନି ।

ଗୁଡ଼-ଗୁଡ଼ କହି ସେ ଚାଲିଗଲେ । ମୁଁ ଟିକିଏ ଶାନ୍ତିରେ ନିଶ୍ୱାସ ମାରି, ପୁଣି କାମରେ ଲାଗିଗଲି । କାମ ଶେଷ ହୋଇଗଲା ପ୍ରାୟ ୨ଟା ବେଳକୁ; ସେଇଦିନ ଠିକ୍ ତିନିଟା ବେଳକୁ ପୁଣି, କମୋଡର ବାଲ୍‌ସୁବ୍ରମଣ୍ୟମ୍ ମୋ ପାଖକୁ ଆସି ଖଣ୍ଡେ ଚିଠି ଧରେଇ ଦେଇ କହିଲେ- (କାଲ ସୁବହ ଏୟାର ମେ ଜଏନ୍ କରଲୋ । ବାକି ଜରୁରତ ପଡ଼େ ତୋ ଫିର ବୁଲାଏଙ୍ଗେ) କାଲି ସକାଳୁ ଆକାଶ ବାହିନୀରେ ଯଏନ୍ କରିଯାଅ । ଦରକାର ପଡ଼ିଲେ ପୁଣି ଡାକିବି ।

ସାର୍ କହି ଚିଠି ଖୋଲିଲି - ସେଇଟା ମୋର ବଦଳି ଆଦେଶ ଥିଲା - କଟକ ଗ୍ରୁପ୍‌ରୁ ୧ମ ଓଡ଼ିଶା ଆକାଶ ବାହିନୀ ସ୍କାର୍ଡନ-ଭୁବନେଶ୍ୱର ।

ସେଦିନ ଥିଲା- ୨୫.୮.୮୬ ମୁଁ ସକାଳ ୧ଟା ସମୟରେ ଯାଇ ପହଞ୍ଚି ଦେଖେତ ଅଫିସ ଜିପ ତଳେ ଜଣେ କେହି - (ପି.ଆଇ ଷ୍ଟାଫ) ପଶି କିଛି ନଟ ବୋଲ୍‌ଟ ଟାଇଟ୍ କରୁଛନ୍ତି କି କ'ଣ - କେବଳ ଗୋଡ଼ ଦୁଇଟି ବାହାରକୁ ଦିଶୁଛି, ତେଣୁ ମୁଁ ଧରି ନେଲି ଯେ କେହି ହାବିଲଦାର କି ସୁବେଦାର, ଯିଏକି ଡିଫେନ୍ସର ଡ୍ରାଇଭର ଥିବେ ସିଏ ଗାଡ଼ି ଠିକ୍ କରୁଛନ୍ତି ଓ ଡ୍ରାଇଭର ମହାନ୍ତି । ବାହାରୁ ତାଙ୍କୁ ସାହାଯ୍ୟ କରୁଛନ୍ତି ।

ତେଣୁ ମୁଁ ଡ୍ରାଇଭର ମହାନ୍ତି ଉଦ୍ଦେଶରେ କହଲି, କ'ଣ ତୁମେ ଷ୍ଟାଫ୍‌ଙ୍କୁ ଗାଡ଼ି ଠିକ୍ କରିବାକୁ ତଳେ ଭର୍ତ୍ତିକରି, ବାହାରେ ଠିଆ ହୋଇ ମଜା ଦେଖୁଛ । ଏହା କହି କହି ମୁଁ ଅଫିସ ଭିତରକୁ ଚାଲିଗଲି ଓ ପଚାରି ବୁଝିଲି ଯେ ହେଡ୍ କ୍ଲର୍କ (ବଡ଼ବାବୁ) ଉପର ମହଲା ବାରଣ୍ଡାରେ ବସନ୍ତି । ତେଣୁ ମୁଁ ସିଧା ସଳଖ ଉପର ମହଲାର ପଛ ବାରଣ୍ଡାରେ ପହଞ୍ଚି, ଗୋଟିଏ ନମସ୍କାର କରି, ତାଙ୍କ ଆଗରେ ପଡ଼ିଥିବା ଚୌକି ଉପରେ ବସିପଡ଼ି -

ବଦଳି ଅର୍ଡରଟିକୁ ଧରାଇ ଦେଲି । ସେ ତାକୁ ପଢ଼ିଲା ପରେ - ଭଲହେଲା କହି - କାଗଜଟିକୁ ଧରି ଅଫିସରଙ୍କ ପାଖକୁ, ତଳ ମହଲାକୁ ଚାଲିଗଲେ ଓ କିଛି ସମୟ ପରେ ପୁଣି ଫେରିଆସି ନିଜ ସିଟ୍‌ରେ ବସିଗଲେ - ମୋର ବଦଳି କାଗଜଟିକୁ ସେମିତି ଧରି ଫେରିବାରୁ ମୁଁ ତାଙ୍କୁ କିଛି ପଚାରିବା ପୂର୍ବରୁ, ସେ କହିଲେ, "ସାର୍ ତାଙ୍କ ଅଫିସରେ ନାହାନ୍ତି, ଆସନ୍ତୁ ମୁଁ ଯିବି । ବେଶ୍ କିଛି ସମୟ ବିତିଗଲା ।

ଏ ଭିତରେ ଡ୍ରାଇଭର ମହାନ୍ତି ଆସି, ଆମ ପାଖରେ ପହଞ୍ଚି, ମତେ ପଚାରିଲେ, "ମହାନ୍ତି ବାବୁ - ଏଠି କେମିତି । ଆପଣ କ'ଣ ଗ୍ରୁପରୁ କିଛି ଚିଠି ନେଇ ଆସିଛନ୍ତି ? ଡାଇରେକ୍ଟରରେ କ'ଣ ଏତେଚ ଥିଲେ ପରା - ସେଠି କ'ଣ କାମ ସରିଗଲା । ମୁଁ ତେଣୁ କହିଲି, ହଁ ଡାଇରେକ୍ଟର କାମ ସାରିଦେଲି ଆଉ ଗ୍ରୁପ୍‌ର କାମ ମଧ୍ୟ ସାରିଦେଲି । ଏବେ ତୁମର କାମ କରିବାକୁ ଡେପୁଟି ଡିଜି ମତେ ଏଠାକୁ ପଠାଇ ଦେଲେ । ତମ କାମ କ'ଣ ଅଛି କୁହ, ତା ବି ସାରିଦେବି ।

ବଡ଼ ବାବୁ ଅଲ୍ଲୀ - ଏ ଭିତରେ ବୁଝିନେଲେ ଯେ ଓ୍ୱିଙ୍ଗ କମାଣ୍ଡର ମୁଖାର୍ଜୀ (D. Kukherjee) ତାଙ୍କ ଅଫିସକୁ ଆସିଲେଣି । ଗାଡ଼ିର ଗୋଟିଏ ଚକା ପାଖରେ କିଛି ଶବ୍ଦ ହେଉଥିବାରୁ ସେ ଗାଡ଼ି ଠିକ୍ କରୁଥିଲେ । ଏଥିରୁ ମୁଁ ବୁଝିଗଲି ଯେ ନିଜେ କମାଣ୍ଡିଂ ଅଫିସର ଗାଡ଼ି ତଳେ ପଶି; ଗାଡ଼ିର ନଟ୍-ବୋଲ୍‌ଟ ଠିକ୍ କରୁଥିଲେ - ସାଧାରଣରେ ଏୟାରଫୋର୍ସରେ ପାଇଲଟ ମାନେ ପ୍ରାୟ ସମସ୍ତ ଯାନର ମରାମତି କାମ ଉଣା ଅଧିକେ ଜାଣିଥାନ୍ତି । ଏପରିକି ଉଡ଼ାଇବାକୁ ଉଡ଼ାଜାହାଜର ଶବ୍ଦ ଯଦି ଟିକିଏ ଅଡୁଆ ଶୁଭିଲା ତେବେ ସଙ୍ଗେ ସଙ୍ଗେ ଜାହାଜ ମରାମତି ସଂସ୍ଥାକୁ ଖବର ଦେଇ ତାକୁ ସଜାଡ଼ିବାକୁ ନିର୍ଦ୍ଦେଶ ଦେଇଥାନ୍ତି । ସେ ସଂସ୍ଥାକୁ ଫ୍ଲାଇଙ୍ଗ (Squad) ସ୍କାର୍ଡର ବିଭିନ୍ନ ବିଭାଗର ଜୁନିଅର ଅଫିସର (JWO) (MWO) ଓ ତା ତଳକୁ Surgent / Corporal ପ୍ରଭୃତି (ପଦବୀ) ର୍‍ୟାଙ୍କର ଅନ୍ୟମାନେ ଥା'ନ୍ତି ।

ତେବେ ମୁଁ ଆକାଶ ବାହିନୀର ଅଫିସର ଓ ତାଙ୍କ ପୋଷାକ ବିଷୟରେ ଆଦୌ ପରିଚିତ ନଥିଲି । ତେଣୁ ମୁଁ ଯେତେବେଳେ ୟୁନିଟ୍‌ର ବଡ଼ ବାବୁ ସାଙ୍ଗରେ ଅପିସରଙ୍କ ରୁମ୍‌କୁ ଗଲି, ସିଏ ନମସ୍କାର କରିବାରୁ ମୁଁ ମଧ୍ୟ ନମସ୍କାରଟିଏ କଲି । ହେଲେ ସିଏ କେଉଁ ପଦବୀର ଅଫିସର ମୁଁ ଜାଣି ପାରି ନଥିଲି; ସେ ପ୍ରଥମେ ମୋ ବଦଳି ଅର୍ଡର ଦେଖି ଓ ମତେ ଦେଖିଲା ପରେ ତାଚ୍ଛଲ୍ୟ ଭାବେ କହିଲେ– "ହେଲୋ ମିଃ. ମହାନ୍ତି, କିସକୋ ମସକା ମାର୍‌କେ ଇଧର ଆ ଗୟା" । କାହାକୁ ତେଲ ମାରି ଏଠାକୁ ବଦଳୀ ହୋଇ ଆସିଲ । ତେଣୁ ମୋ ଉତ୍ତର ଥିଲା "ମୈ କିସକୋ ମସକା ନାହିଁ ମାରା ?" ଆପକା ଡେପୁଟି ଡିଜି ନେ କିସିକୋ ମସକା ମାରକେ ମେରେକୋ ଇଧର ପୋଷ୍ଟିଂ କିୟା ହୈ । (ମୁଁ କାହାକୁ ତେଲ ମାରିନି, ଆପଣଙ୍କ ଡେପୁଟି ଡି.ଜି. କାହାକୁ ତେଲ ମାରି ମୋତେ ଏଠାକୁ ବଦଳି କରି ଆଣିଛନ୍ତି) ତାଙ୍କ ଅଫିସରେ ୧ ୨ ଦିନ କାମ କଲାପରେ ଏଠାକୁ ପଠାଇଛନ୍ତି ।

ମୋ କଥା ଶୁଣି, ସେ ଏକଦମ ଚୁପ ହୋଇଗଲେ ଏବଂ କିଛି ସମୟ ଭାବିବା ପରେ, ବଡ଼ବାବୁ ଅଲ୍ଲୀଙ୍କ୍ କହିଲେ "ଠିକ୍ ଅଛି" ଟ୍ରେନିଂ ସେକସନ (ବିଭାଗ)ର ଚାର୍ଯ ଦେବାପାଇଁ ଅଫିସ ଅର୍ଡର କର ।

ତାପରେ କାମ ସୁରୁଖୁରୁରେ ଚାଲିଲା : ସେଇ ଏକା କାମ କିନ୍ତୁ କିଛି ନା'ର ଅଦଳ ବଦଳ ସେତେବେଳେ ପିଲାଙ୍କୁ ପ୍ରଶିକ୍ଷଣ (ଟ୍ରେନିଂ) ଦେବା ପାଇଁ ଏହି ପାଇଲଟ ମାନେ କାଠରେ ନିର୍ମିତ, ଉଡ଼ାଜାହାଜ, ଯେଉଁଥିରେ କି ଇଞ୍ଜିନ ନଥାଏ । ସେଇ ଇଞ୍ଜିନ ବିହୀନ ଉଡ଼ାଜାହାଜକୁ ଗ୍ଲାଇଡର କୁହାଯାଏ । ଯାହାକୁ କି ତାର ଦଉଡ଼ି (Wire rope)ଦ୍ୱାରା ବନ୍ଧାଯାଇ ଜିପ ଦ୍ୱାରା ଟଣାଯାଇ ଆକାଶର ପ୍ରାୟ ୧୦୦୦ ଫୁଟ ଉପରେ ଛାଡ଼ି ଦିଆଯାଏ ଏବଂ ତାକୁ ଏହି ଅଫିସର ମାନେ ଏନ୍.ସି.ସି. ଛାତ୍ର/ଛାତ୍ରୀମାନଙ୍କୁ ଆକାଶରେ ଉଡ଼ାଇବା ଶିକ୍ଷା ଦେଇଥାନ୍ତି । ଏହା ପବନର ଦିଗକୁ ଲକ୍ଷ୍ୟ କରି ଉଡ଼ାଯାଇଥାଏ ଓ ଶେଷରେ, ସେଇ ପବନର ଦିଗ ଲକ୍ଷ୍ୟ କରି, ତଳକୁ

ଓହ୍ଲାଇବାକୁ ହୋଇଥାଏ। ଏ ଅଫିସରମାନେ ଟ୍ରେନର ଭାବେ ଯୋଗ ଦେଇଥାନ୍ତି। ଓଡ଼ିଶାର ପ୍ରାୟ ସମସ୍ତ ବଟାଲିଅନ ଓ ୟୁନିଟ୍‌ଗୁଡ଼ିକରେ ଜୁନିଅର ଅଫିସରମାନଙ୍କୁ ପୋଷ୍ଟିଂ କରାଯାଉଥିଲା କିନ୍ତୁ ପରେ ସିନିଅର ଅଫିସର (Lt. Col. Col. କମୋଡର, ନେଭି ୱିଙ୍ଗ କମାଣ୍ଡରଙ୍କୁ ଆକାଶବାହିନୀର ପ୍ରଶିକ୍ଷଣର ଦାୟିତ୍ୱ ଦିଆଗଲା। ଏମାନଙ୍କ ତଳକୁ ଏଡ୍‌ମିନିସଟ୍ରେଟିଭ ପୋଷ୍ଟରେ Major - Squarden Leader (Air) ଦାୟିତ୍ୱ ବହନ କରୁଥିଲେ।

ଡି. ମୁଖାର୍ଜୀଙ୍କ ପରେ (୪4-୪୪) ୱିଙ୍ଗ କମାଣ୍ଡର ଏ କେ ତ୍ରିପାଠୀ ଦାୟିତ୍ୱ ନେଲେ। ସିଏ ବୀରଚକ୍ର ମେଡାଲର ଅଧିକାରୀ ଥିଲେ ଓ ଚାକିରିରୁ ଅବସର ନେଲାପରେ ରିଏମ୍ପ୍ଲୟମେଣ୍ଟରେ ଅଳ୍ପଦିନ ପାଇଁ ଅଫିସର ଦାୟିତ୍ୱ ବହନ କରିଥିଲେ। ଏହା ପୂର୍ବରୁ ସେ ଓଡ଼ିଶାର ଚାରବାଟିଆରେ ମଧ୍ୟ କିଛିଦିନ ଅବସ୍ଥାନ କରିଥିଲେ। ଗ୍ଲାଇଡରକୁ ସିଏ ଏକ ପ୍ରକାର ଖେଳନା ଭଳି ଆକାଶରେ ଉଡ଼ାଉଥିଲେ, ଆଉ ସମସ୍ତଙ୍କୁ କହୁଥିଲେ, ଆରେ କିଛି ସମୟ ଆକାଶରେ ଉଡ଼ି, ଧରିତ୍ରୀ ମା'କୁ ତୁମ ଓଜନରୁ ମୁକ୍ତ କର।

ଦିନେ ବାପା– ଏ ଗ୍ଲାଇଡର କିପରି ଉଡୁଛି ଦେଖିବାକୁ ଚାହିଁବାରୁ ମୁଁ ସକାଳୁ ସକାଳୁ ବାପାଙ୍କୁ, ଉଡ଼ାଜାହାଜ ପଡ଼ିଆକୁ ନେଇଗଲି। ବାପାଙ୍କୁ ଦେଖି – ସିଏ ବେଶ୍ ଖୁସି ହୋଇଗଲେ ଏବଂ ବାପାଙ୍କ ସହିତ ବେଶ କିଛି ସମୟ ଆଳାପ କଲାପରେ, ଗ୍ଲାଇଡରରେ ବସିବାକୁ ଡାକିଲେ। କିନ୍ତୁ ବାପା ଡରିଗଲେ ଓ କହିଲେ ନା' ଆପଣ ଯାଆନ୍ତୁ। ତେଣୁ ମୁଁ ତାଙ୍କ ସାଙ୍ଗରେ ଯିବାକୁ ଇଚ୍ଛା ପ୍ରକାଶ କରିବାରୁ ଆମେ ଦୁହେଁ – ଗ୍ଲାଇଡରରେ ଉପରକୁ ଉଠିଲୁ। (ତାରରେ ବନ୍ଧା ହୋଇଥିବା ଗ୍ଲାଇଡରଟିକୁ ଜିପ ଟାଣି ନେଇ, ଆକାଶର ପ୍ରାୟ ୨.୩ କ.ମି. ଉପରେ ପହଞ୍ଚିବାରୁ; ତାରଟିକୁ ରିଲିଜ କରି, ୱିଙ୍ଗ କମାଣ୍ଡର ତ୍ରିପାଠୀ ଆମେ କେତେ ଉଚ୍ଚରେ ଅଛୁ, ତା' କହିଥିଲେ, ଯାହା କି ଆଜି ମୋର ମନେ ନାହିଁ। ସେତେବେଳକୁ ଆମେ ପ୍ରାୟ ଏରୋଡ୍ରମ, ଉପରେ ୨.୩ ରାଉଣ୍ଡ ବୁଲି ସାରିଲୁଣି। ତଳକୁ ଦେଖିବାକୁ କହିବାରୁ ମୁଁ ତଳକୁ ଅନାଇ କିଛି ବାରି ପାରୁନଥାଏ। ଆମେ କାହା ଉପରେ

ଉଡୁଛି ସେତେବେଳେ ସିଏ ହସି ହସି ପଚାରିଲେ- "ମହାନ୍ତି ବାବୁ ତୁମେ ପହଁରା ଜାଣିଛ ? ମୁଁ ହଁ କହିବାରୁ, ଡାଇଭ ମାରି ନା' ? ସେ ଭଳି ସୁବିଧା ପାଇନି । ତେବେ ହେଉ ଆମେ ଆକାଶରେ ଡାଇଭ ମାରିବା; ମନ ଦମ୍ଭ ଧରି ବସ । ବାସ୍, ତାପରେ ଆମ ଗ୍ଲାଇଡର ତଳ ମୁହାଁ ହୋଇ ଗୋଟାଏ ପରେ ଗୋଟାଏ ଘେରା ମାରି ଚାଲିଲା ୧-୨-୩ । ଥରକୁ ପ୍ରାୟ ୧୦୦୦ ଫୁଟ ତଳକୁ ଖସି ଆସୁଥିଲା । ୩ଥର ଗୋଲେଇ ହେଲା ପରେ ମୁଁ ଦେଖିବାକୁ ପାଇଲି ଯେ ପ୍ରାୟ ଆଉ ୧୦୦ ଫୁଟ ଦୂରରେ (ତଳେ) ରେଳ ଲାଇନ୍; (ଭୁବନେଶ୍ୱରର ପୁନାମା ଗେଟ) ସେତେବେଳେ ତା ଉପରେ ବ୍ରିଜ ହୋଇ ନଥିଲା)

ମୁଁ ସେଇଠୁ କହିଲି, ଆମେ ବହୁତ ତଳକୁ ଖସି ଆସିଲୁଣି ସାର ।

ସେ କହିଲେ, ହଁ - ଆମେ ଏବେ ୫୦୦୦ ଫୁଟ ତଳକୁ ଖସି ଆସିଲୁଣି - ଆଉ ଥରେ ଡାଇଭ ମାରିଲେ- ତଳେ ବାଡ଼େଇ ହୋଇଯିବା । ତେଣୁ ପୁଣି ଉପରକୁ ଉଠିଲୁ । ପ୍ରାୟ ୨୦୦୦ ଫୁଟ ଉପରକୁ ଉଠିଲା ପରେ କହିଲେ, ଆମେ ଏବେ ଓୟୁଏଟି ଉପରେ ପୁଣି ଉଡ଼ାଜାହାଜ ପଡ଼ିଆରେ । ଆମେ ସେଦିନ ୪୫ରୁ ୬୦ ମିନିଟ୍ ପର୍ଯ୍ୟନ୍ତ ଗ୍ଲାଇଡରରେ ଉଡ଼ି, ଲେଣ୍ଡିଂ କରିଥିଲୁ, ଏହି ଉଡ଼ାଣ ବେଳେ, ଉପରକୁ ଉଠିବା ଓ ତଳକୁ ଖସିବା ବେଳେ ପ୍ରାୟ ୪ ଜଣ ଲସ୍କର ଦରକାର ପଡ଼ନ୍ତି, କାରଣ ଉଡ଼ିଲାବେଳେ ଓ ଖସିଲାବେଳେ ରନୱେରେ ଗ୍ଲାଇଡର ଡେଣା (Wing) ତଳେ ବାଡ଼େଇ ହୋଇ ଭାଙ୍ଗି ଯିବାର ସମ୍ଭାବନା ଥାଏ ? ତାପରେ ସିଏ (Wing Commander Tripathy) ଛାତ୍ର (Cadet)ଙ୍କୁ ନେଇ ପୁଣି ଆକାଶକୁ ଉଠିଲେ । ଏ ଅଫିସରମାନେ ପିଲାଙ୍କୁ ଗ୍ଲାଇଡର ବେଗ, ପବନର ଦିଗ (Wing) ଡେଣା ଓ ଲାଞ୍ଜକୁ କିପରି କଂଟ୍ରୋଲ୍ କରି ଚଳାଇବାକୁ ହୁଏ ସେ ବିଷୟରେ ପିଲାଙ୍କୁ ଶିକ୍ଷା ଦେବା ସମୟରେ ବିଶେଷ ଭାବେ ଧ୍ୟାନ ଦେଇଥାନ୍ତି । ତାଛଡ଼ା ଏମାନେ ମୋଡ଼େଲ ବା ପ୍ରତିକୃତି - ତିଆରି କରିବା ଓ ଛୋଟ ମୋଡେଲଗୁଡ଼ିକୁ ରିମୋଟ ଦ୍ୱାରା ଉଡ଼ାଇବା

– ଇତ୍ୟାଦି । ତେଣୁ ଦିନଗୁଡ଼ିକ ବେଶ କଟି ଯାଉଥିଲା । ୱିଙ୍ଗ କମାଣ୍ଡର ତ୍ରିପାଠୀଙ୍କ ସମୟରେ ପ୍ରାୟ ସମସ୍ତ ଅଫିସ ଏକ ରକମ ଥଣ୍ଡା ପରିବେଶରେ କଟିଯାଉଥିଲା । କିଏ ଛୁଟି ନେବ – କିଏ ଡେରିରେ ଆସିଲା ଏ ଛୋଟ ଛୋଟ କାମ ପାଇଁ ସିଏ ଆଦୌ ଧ୍ୟାନ ଦେଉନଥିଲେ । କାମ ଠିକ୍ କର ମୌଜ କର, ଏହା ହିଁ ଥିଲା ତାଙ୍କର କାର୍ଯ୍ୟ କରିବାର ପଦ୍ଧତି ।

ୱିଙ୍ଗ କମାଣ୍ଡର ତ୍ରିପାଠୀଙ୍କ ପରେ – ଜଣେ ଓଡ଼ିଆ ଅଫିସର ଆସି ଜଏନ୍ କଲେ, ଡିସେମ୍ବର ମାସ ୧୯୮୮ ମସିହାରେ । ତାଙ୍କର କାର୍ଯ୍ୟକାଳ ଡିସେମ୍ବର ୮୮ରୁ ନଭେମ୍ବର ୧୯୯୪ – ଏ ବର୍ଷ ଗୁଡ଼ିକ କିପରି କଟିଗଲା କିଛି ଜଣା ପଡ଼ିଲା ନାହିଁ । କାମ କରିବାର ଶୈଳୀ ବିଚିତ୍ର । ସେ ଅଫିସରେ ମୋ ଠାରୁ ଜଣେ ସିନିଅର ଆସିଷ୍ଟାଣ୍ଟ ଜଏନ୍ କଲେ । ନା ଥିଲା ପରମାନନ୍ଦ ଦାସ । କିଛି କଥା ନଥାଇ ବେଶି ଜାଣିବା ଲୋକ ସିଏ ଥିଲେ । ତେଣୁ ଅଫିସର ତାଙ୍କୁ ବେଶି ପଚରା ଉଚରା କରନ୍ତି ନାହିଁ । ସବୁତକ ମୋ ମୁଣ୍ଡରେ । ଦଳ ଗଠନ କରିବା ଓ କର୍ମଚାରୀଙ୍କ (ରାଜ୍ୟ କର୍ମଚାରୀ) ଉପରେ କିଛି କେହି ଅଭିଯୋଗ ଆଣିଲେ ତାକୁ ସହଜରେ ଟାଳିଦେବା ତାଙ୍କ ପକ୍ଷରେ ବେଶ ସହଜ ଥିଲା । ତାଙ୍କ ସମୟରେ ଶ୍ରୀମତୀଙ୍କର ଗୋଟିଏ ମାସିକ ପତ୍ରିକା "ନିୟନ୍ତା" ପ୍ରକାଶ ପାଉଥିଲା, ସେତେବେଳେ ସିଏ ଅଫିସ-ଅଫିସ୍ ବୁଲି ବିଜ୍ଞାପନ ବି ଆଣୁଥିଲେ । ତଥାପି ବହୁଟଙ୍କା ହାତରୁ ଖର୍ଚ୍ଚ କରିବାକୁ ପଡୁଥିଲା । ଏଇ ସମୟରେ ସରକାରଙ୍କର କୋପବୃଷ୍ଟି ପଡ଼ିଲା ଏବଂ ଏହା ଏକ ଲାଭଦାୟକ ବେପାର ବୋଲି କହି ମୋତେ ଏଥିପାଇଁ କୈଫୟତ ଦେବାକୁ ନିର୍ଦ୍ଦେଶ ଆସିଲା ଉଚ୍ଚ ଶିକ୍ଷା ବିଭାଗ (ସେତେବେଳେର ଡି.ପି.ଆଇ)ଙ୍କ ଆଦେଶକୁ ସେ ଏକ ଚିଠି; ଯାହାକି ମୁଁ ବହୁ ଆଗରୁ, ମୋର ସ୍ତ୍ରୀ ଏପରି ଗୋଟିଏ ପତ୍ରିକା ପ୍ରକାଶ କରୁଛନ୍ତି ବୋଲି, ସରକାରଙ୍କୁ ଜଣାଇଥିଲି ଓ ତାହା ଡି.ପି.ଆଇ ଅଫିସକୁ ଜଣାଇ ଦିଆଯାଇଥିଲା; ସେ ଚିଠି ଦେଇ ଏକ ସୁନ୍ଦର ଚିଠି ଲେଖି ସେ ବିଷୟରେ ନିର୍ଦ୍ଦେଶକଙ୍କ ମୁହଁ ବନ୍ଦ କରିଦେଇଥିଲେ ।

କିନ୍ତୁ ଦୁଃଖର ବିଷୟ ଯେ ଚାକିରିରେ ଥିବା ସମୟରେ ତାଙ୍କର ଦେହାନ୍ତ ହୋଇଗଲା। ସେ କଟକର ହସପିଟାଲ୍ ପାଖରେ ରହୁଥିଲେ। ତାଙ୍କର ଦେହ ଖରାପ ଓ ସେ ହସ୍ପିଟାଲ୍‌ରେ ଚିକିତ୍ସିତ ହେଉଥିବା ଖବର ପାଇ ମୁଁ ଯାଇ ପହଞ୍ଚିଲା ବେଳକୁ ସେ ମୃତ୍ୟୁବରଣ କରିଥିଲେ ଓ ତାଙ୍କୁ ତାଙ୍କ ପିଲାମାନେ ଗ୍ରାମକୁ (ଆଳି) ନେଇ ଚାଲିଯାଇଥିଲେ। ବହୁ ବର୍ଷପରେ ମୁଁ ୨ୟବାର ହେଡ କ୍ଲର୍କ ଭାବେ ଜଏନ୍ କରିବା ପରେ ତାଙ୍କ ପୁଅ ଆସି ପେନ୍‌ସନ ଓ ଅନ୍ୟାନ୍ୟ ବକେୟା କାମ କରିନେଇଥିଲେ। ଏହି ସମୟରେ ୱିଙ୍ଗ କମାଣ୍ଡର ଜି. ମିତ୍ର ଓ ଜଣେ ଛାତ୍ରଙ୍କର ଗ୍ଲାଇଡର ଦୁର୍ଘଟଣାରେ ମୃତ୍ୟୁ ହୋଇଥିଲା।

ମୁଁ ଆକାଶ ବାହିନୀରେ ଅଗଷ୍ଟ ୧୯୮୬ ମସିହାଠାରୁ ଜୁନ ୨୦୦୦ ପର୍ଯ୍ୟନ୍ତ କାର୍ଯ୍ୟ କଲାପରେ ମତେ ସୈନିକ ସ୍କୁଲକୁ ବଦଳି କରିଦିଆଗଲା। ସେ ସମୟରେ ମୋର ପ୍ରମୋଶନ ପାଇଁ, ଘନ ଘନ ଚିଠି ଦେଇଥିଲି, କିନ୍ତୁ ପ୍ରମୋଶନ ବଦଳରେ ମତେ ବଦଳି କରି ଦିଆଗଲା ସୈନିକ ସ୍କୁଲ ଭୁବନେଶ୍ୱରକୁ। ସୈନିକ ସ୍କୁଲରେ ସକାଳ ୮ଟାରୁ ୨ଟା ପର୍ଯ୍ୟନ୍ତ ଅଫିସ କାର୍ଯ୍ୟ କରିବା ସମୟ; ତେଣୁ ଉଚ୍ଚ ଶିକ୍ଷା ବିଭାଗ ଅଫିସ ବିଷୟରେ ଚିନ୍ତା କରିବାକୁ ସମୟ ମିଳୁ ନଥିଲା। ପ୍ରୋମଶନ କରିବା ପାଇଁ ମୁଁ ଷ୍ଟେଟ୍ ଟ୍ରିବ୍ୟୁନାଲ୍‌ର ସାହାଯ୍ୟ ନେଲି; ଓ ଟ୍ରିବ୍ୟୁନାଲ ୩ ମାସ ଭିତରେ ମୋର ପ୍ରମୋଶନ କରିବା ପାଇଁ ଆଗ୍ରହ ପ୍ରକାଶ କରିଥିଲେ।

ଏ ସବୁ ଜାଣିଲା ପରେ ଉଚ୍ଚଶିକ୍ଷା ବିଭାଗର, ପୁରୁଣା ନଥି ସବୁ ବାହାର କଲି। ମୋ ପୂର୍ବରୁ ଯେଉଁମାନେ ହେଡ କ୍ଲର୍କ ଓ ଏକାଉଣ୍ଟାଣ୍ଟ୍ ପ୍ରମୋଶନ ପାଇଥିଲେ; ତା ବାଦ ମତେ ଉଚ୍ଚ ଶିକ୍ଷା ନିର୍ଦ୍ଦେଶକ ଚାକିରି ଦେଲେ ଓ ସରକାର (ଉଚ୍ଚ ଶିକ୍ଷା ବିଭାଗ, ଓଡ଼ିଶା ସରକାର) ମୋ ଚାକିରିକୁ କନଫର୍ମ (Conform) କଲେ; ତେବେ ମୁଁ ବା ଆମେ ଜିଲ୍ଲା ସ୍ତରୀର କିପରି ହେଲୁ। ଏ ବିଷୟରେ ମୁଁ ସୂଚନା ଅଧିକାର ଆଇନ ଅନୁସାରେ

ସମସ୍ତ ନିୟମ ମାଗିବାରୁ ୧୪ ବର୍ଷ ପରେ ପୁଣି ଜଣାଇଲେ ଯେ, ନାହିଁ ସମସ୍ତ କିରାଣି ଓ ୪ର୍ଥ ଶ୍ରେଣୀ କର୍ମଚାରୀମାନେ ରାଜ୍ୟସ୍ତରୀୟ। ମୋର ଓକିଲ ତାଙ୍କ ଏଫିଡେଭିଟ୍‌କୁ ଚାଲେଞ୍ଜ କରି ପୁଣି କେସ କଲେ, କିନ୍ତୁ ଓଡ଼ିଶା ସରକାର ଟ୍ରିବ୍ୟୁନାଲ୍ ଉଠାଇ ଦେବାରୁ ତାହା ଉଚ୍ଚ ନ୍ୟାୟାଳୟକୁ ଟ୍ରାନ୍ସ୍‌ଫର ବା ବଦଳି ହୋଇ ଯାଇଛି, ଯାହାକି ସେ ନ୍ୟାୟ ମିଳିବ କେବେ ତା କେହିବି କହିବା ସମ୍ଭବ ନୁହେଁ, ଯେହେତୁ ହଜାର-ହଜାର କେସ୍ ଉଚ୍ଚ ନ୍ୟାୟାଳୟରେ ଗଡ଼ି ଆସୁଛି ଦୀର୍ଘଦିନ ହେବ।

ଏ ଅଫିସରେ ମୋର ଆଉ ଗୋଟିଏ ଦୁଃଖଦ ଘଟଣା ଘଟିଥିଲା; ଯାହାକି ଦିନେ, ମୋ ଅଫିସ (ସୈନିକ ସ୍କୁଲ)ରୁ ଜଣେ ହାବିଲଦାର ଓ ଜଣେ ଜୁନିଅର କିରାଣିଙ୍କୁ କିଛି ଡାକ ନେଇ କଟକ ଯିବାର ଥିଲା। ସେମାନେ ମୋଟର ସାଇକେଲରେ କଟକ ଗଲେ, ଡାକ ଦେଇ ଫେରିଲାବେଳକୁ ନଦୀ ପୋଲ ଉପରେ ବାଲିଥିବାରୁ; ସେହି ବାଲିରେ ମୋଟର ସାଇକଲଟି ସ୍ଲିପ୍ କରିଗଲା ଓ ସେ ଦିହେଁ ଛିଟିକି ପଡ଼ିଲେ। ଦୁହିଁଙ୍କର ଗୋଡ଼ ଓ ହାତ ହାଡ଼ ଭାଙ୍ଗିଗଲା ଓ ମତେ କେହିଜଣେ ଖବର ଦେଲେ ଯେ ସେ ଦୁହିଁଙ୍କୁ ନେଇ କ୍ୟାପିଟାଲ୍ ହସପିଟାଲ୍‌ରେ ଭର୍ତ୍ତି କରି ଦେଇଛନ୍ତି ଓ ଶୀଘ୍ର ଆସି ତାଙ୍କ ଚିକିତ୍ସା ପାଇଁ ବନ୍ଦୋବସ୍ତ କର। ମୁଁ ଏ ଖବର ସ୍କୁଲର ହେଡମାଷ୍ଟର ଓ ପ୍ରିନ୍ସିପାଲ୍‌ଙ୍କୁ ଜଣାଇଲି ଏବଂ କଟକ ଗ୍ରୁପ୍ କମାଣ୍ଡରଙ୍କ ନିକଟକୁ ଫୋନ୍ ଲଗାଇଲି।

ମୋ ଫୋନକୁ ସିନିୟର କିରାଣି ପି.ସି. ସାମଲ ଧରିଲେ ଓ ଏ ଦୁର୍ଘଟଣା ବିଷୟ ଜଣାଇବାରୁ, ସେ ମନା କରି କହିଲେ, କିଛି ସାହାଯ୍ୟ କିପରି ଏ ଅଫିସ କରିବ। ମୁଁ ବାଧ୍ୟ ହୋଇ ଗ୍ରୁପ କମାଣ୍ଡରଙ୍କୁ ଫୋନ ଦେବାକୁ କହିଲି, ଏବଂ ମୋ ଗମ୍ଭିର ପାଟି ଶୁଣି ଗ୍ରୁପ୍ କମାଣ୍ଡର ନିଜେ ବୋଧେ ରିସିଭର ମାଗି ମୋ ସହିତ କଥା ହେଲେ ଏବଂ ମୁଁ ମାଗିଥିବା ଟ. ୧୫,୦୦୦.୦୦ (ପନ୍ଦର ହଜାର) ଟଙ୍କା ଜଣେ କୋରିଅର ହାତରେ ସେହିଦିନ ହିଁ ପଠାଇଥିଲେ। ସେ ଦୁଇଜଣଙ୍କର ଟ୍ରିଟ୍‌ମେଣ୍ଟ

ଚାଲିଲା । ସେ ହାବିଲଦାରଙ୍କୁ ମିଲିଟାରୀ ହସ୍‌ପିଟାଲ୍ ପଠାଇ ଦିଆଗଲା ଓ ଜୁନିୟର କ୍ଳର୍କ ହାଲୁ ଚରଣ ବେହେରା ଭଲ ହେବା ପାଇଁ ପ୍ରାୟ ୩ ମାସ ଲାଗିଗଲା ।

ମୋର ଶେଷରେ ପ୍ରମୋଶନ ହେଲା, କିନ୍ତୁ ସେତେବେଳର ଡେପୁଟି ଡାଇରେକ୍ଟର ଏନ୍.ସି.ସି.ଙ୍କ ଦୟାରୁ ଜୟପୁର, ବ୍ରହ୍ମପୁର ଏପରିକି ବଲାଙ୍ଗିରର ପ୍ରମୋଶନ ପାଇଥିବା କିରାଣିମାନେ ତାଙ୍କ ନୂଆ ଅଫିସରେ ଜଏନ୍ କରିଯାଇଥିଲେ ସୁଦ୍ଧା, ମୋ ଚିଠିଟି ସୈନିକ ସ୍କୁଲରେ ପହଞ୍ଚିବାକୁ ୧୦ଦିନ ରୁ ଉର୍ଦ୍ଧ୍ୱ ଲାଗିଗଲା, ତା ପୁଣି ମୋର ସହଧର୍ମିଣୀ, ଉଚ୍ଚଶିକ୍ଷା ବିଭାଗର ମନ୍ତ୍ରୀଙ୍କୁ ଏ ବିଷୟରେ କହିବାରୁ ମନ୍ତ୍ରୀ ଫୋନ୍ କଲେ ଓ ଚିଠିଟି ସିଏ ନିଜେ ଯାଇ, ନିର୍ଦ୍ଦେଶାଳୟରୁ ଆଣି ଆସିଥିଲେ । ଯଦି ଆଉ ଦୁଇଦିନ ଡେରି ହୋଇଥାନ୍ତା, ତେବେ ଗୋଟାଏ ଇନ୍‌କ୍ରିମେଣ୍ଟ୍ ମଧ୍ୟ ମିଳି ନଥାନ୍ତା, ଯାହାକି ଅନ୍ୟମାନଙ୍କ ସହିତ ହେଲା ।

ଶେଷରେ ମୁଁ ୨୯ ସେପ୍ଟେମ୍ବର ୨୦୦୩ରେ ୨ୟ ବାର ଆକାଶ ବାହିନୀକୁ ମୁଖ୍ୟ କିରାଣି ଭାବେ ଆସି ଜଏନ୍ କଲି, ସେତେବେଳେ ମଧ୍ୟ ମୋର ପଦୋନ୍ନତି ପାଇଁ, ମୁଁ ମୋର ଉପରିସ୍ଥ ଅଫିସରଙ୍କୁ ଚିଠି ଲେଖିବା ସହିତ କୋର୍ଟର ଆଶ୍ରୟ ନେଇଥିଲି କିନ୍ତୁ କୋର୍ଟ ନିର୍ଦ୍ଦେଶକୁ ଉଚ୍ଚଶିକ୍ଷା ସଚିବ ସମର ଶିକ୍ଷାର୍ଥୀବାହିନୀରେ କାର୍ଯ୍ୟରତ କିରାଣିମାନେ ଜିଲ୍ଲାବର୍ଗର ବୋଲି ଏକ ମିଥ୍ୟା ହଲପ ନାମା ଦାଖଲ କରି, କୋର୍ଟ ଅର୍ଡରକୁ ଚପାଇ ଦେଇଥିଲେ; ତେବେ ମୋର ଓକିଲ ତାକୁ ଆପତ୍ତି (challange) କରି ପୁଣି ଏକ ମାମଲା ରଜୁ କରିଥିଲେ - ଯାହାକି ଆଜିପର୍ଯ୍ୟନ୍ତ ତାର ସୁଫଳ ମିଳିନାହିଁ । ତେବେ ସୂଚନା ଅଧିକାର ଆଇନ ବଳରେ ମୁଁ ପୂର୍ବ କାର୍ଯ୍ୟାବଳୀ ଓ ନିୟମ କାନୁନକୁ ଆଧାର କରି ସୂଚନା ମାଗିବାରୁ, ମୋତେ ଏହି ଚାକିରି ରାଜ୍ୟସ୍ତରୀୟ ବର୍ଗର ବୋଲି ୨୦୧୯ରେ ଚିଠି ଦେଇଥିଲେ । କିନ୍ତୁ ସେହି ଚିଠି କୋର୍ଟକୁ ଜଣାଇ ତାଙ୍କର ଭୁଲ୍ ସୁଧାରିବା ସହିତ କୋର୍ଟ ଦେଇଥିବା ନିର୍ଦ୍ଦେଶକୁ କାର୍ଯ୍ୟକାରୀ କରିବାକୁ ସାହସ ବଳାଉ ନାହାନ୍ତି

ଆଜି ପର୍ଯ୍ୟନ୍ତ । ତେଣୁ ଏ. ଜି. (ଏଡ଼ଭୋକେଟ୍ ଜେନେରାଲ୍‌ଙ୍କ ନିକଟକୁ ମୁଁ ଏ ଭିତରେ ୨-୨ଟି ଚିଠି ପଠାଇଥିଲେ ମଧ୍ୟ ତା'ର ଉତ୍ତର ପାଇ ପାରିନାହିଁ ।

**ଆଜି ୧୬.୧୦.୨୧- ବହୁଦିନ ପରେ ପୁଣି ଆରମ୍ଭ କରୁଛି ମୋର ନିଜସ୍ୱ କିଛି ଘଟଣାବଳୀ :**

ଜନ୍ମଠାରୁ ଶିକ୍ଷା ପର୍ଯ୍ୟନ୍ତ ବି; ନିଜ କଥା - ନିଜ କଥା ବଖାଣିବା ବେଳକୁ ଏତକ ନଥିଲେ, ତାହା ସମ୍ପୂର୍ଣ୍ଣ ହେଲାଭଳି ମନେ ହୁଏନା । ମୋର ଜନ୍ମ କରଞ୍ଜିଆର (ମୟୁରଭଞ୍ଜ) କୌଣସି ଏକ ଥାନା ବାଙ୍ଗିରିପୋଷିରେ । ବଡ଼ ଭାଇଙ୍କ ପରେ ୨ ଜଣଙ୍କ ମୃତ୍ୟୁ ଏବଂ ତାପରେ ମୋର ଜନ୍ମ । ମୋର ଜନ୍ମର ବର୍ଷକ ପରେ ମୋର ସାନଭାଇ ଏବଂ ତାର ୨-୩ ବର୍ଷ ପରେ ଭଉଣୀ । କଥାରେ ଅଛି ବଡ଼ ବାପାର - ସାନ ମାଁର ମଝି-ମଝିଆ କାହାର ନୁହଁ-କିନ୍ତୁ ମୋ କ୍ଷେତ୍ରରେ ତାର ଠିକ୍ ଓଲଟା ।

ମୋ ଛୋଟ ଭାଇ ଓ ମୋର ବୟସ ଅତି କମ ଥିଲା ବୋଲି ଆମ ଦୁଇଜଣଙ୍କୁ ଚଳାଇବା ବୋଧେ କଷ୍ଟ ହେଲା, ତେଣୁ ମୋର ସମୟ କଟିଲା କୌଣସି ନା କୌଣସି "ଚଉକିଆ"ଙ୍କ ଘରେ ଜଙ୍ଗଲ ଭିତରେ । ସପ୍ତାହକୁ ଥରେ ଗାଁ ଚଉକିଆ ହାଜିରା ଦିଅନ୍ତି ଥାନାରେ (ପୋଲିସ) ତେଣୁ ଏ ସପ୍ତାହରେ ଗୋଟିଏ ଗାଁରେ ତ ଅନ୍ୟ ସପ୍ତାହରେ ଅନ୍ୟ ଗୋଟିଏ ଗାଁ ଚଉକିଆଙ୍କ ଘରେ କଟୁଥିଲା । ତେବେ ସେଠି କ'ଣ ଖାଉଥିଲି ଓ କିପରି ଚଳୁଥିଲି ତା, ଯଦିଚ ଆଜି ମନେ ନାହିଁ, ତେବେ ସେ ଚଉକିଆ ଘର ଚଳଣି ସହିତ ନିଶ୍ଚୟ ମୋର ଚଳଣି ଠିକ୍ ସେହି ପରିଥିବ । ଆଦିବାସୀ ମାନଙ୍କର ଖାଦ୍ୟପେୟ ମୋର ଖାଦ୍ୟପେୟ ନିଶ୍ଚୟ ସମାନ ଥିବ । କାଇଭଜା-ମୁଢ଼ି, ମାଣ୍ଡିଆ ଜାଉ, ଜହ୍ନା ହାଣ୍ଡିଆ ନତୁବା ମହୁଲି । ଏହାଛଡ଼ା କାଇ ଓ ଜଙ୍ଗଲୀ ମାଂସ ମଧ୍ୟ, ଥିବ ବୋଲି ଆଶା ।

ବାପା ମୟୂରଭଞ୍ଜର ଗୋଟିଏ ଜାଗାରୁ ଅନ୍ୟ ଜାଗାକୁ ବଦଳି ହୁଅନ୍ତି ଏବଂ ପୋଲିସ ଲାଇନ୍‌ରେ ଘରଟିଏ ସଦାବେଳେ ମିଳିଯାଉଥିଲା ।

ଘରଭଡ଼ା ନେଇ ବାହରେ ରହିବା ମୋର ମନେ ହୁଏନା । ତେବେ ୧୯୪୮ ମସିହାରେ ମୟୁରଭଞ୍ଜ ଓଡ଼ିଶାରେ ମିଶିଲା ପରେ । ବାପାଙ୍କର ବଦଳି ହେଲା ଛତ୍ରପୁର ।

**ଆରମ୍ଭ - ଶେଷରୁ ହିଁ :**

ସମୟ ମରେନା - ସମୟ ବାଟୋଇ ନିଏ ତୁମକୁ, ତୁମର ଶେଷ ପାହାଚକୁ । ତୁମେ ଚଢ଼ି ଚଢ଼ି ଯାଉଛ । ପହଞ୍ଚିବାର ବେଳ ଆସିନି - ବେଳ ଆସିଲେ ତୁମେ ଏକା-ଏକା ଏ ଧରାଧାମ ଛାଡ଼ି ଚାଲିଯିବ କେଉଁ ଅଜଣା ରାଇଜକୁ, ସରିଯିବ ସେଇ ସମୟ । ଯେଉଁ ସମୟଟିକୁ ବାନ୍ଧି ରଖିବେ ତୁମ ପୁଅ ଝିଅ ଓ ଆତ୍ମୀୟ ସ୍ୱଜନମାନେ । ଏହା ମାଧ୍ୟମରେ ।

ତୁମେ ନିଶ୍ଚୟ ମନେ ରଖିଥିବ ସେଇ ସ୍କୁଲର ନା' । ଯେଉଁଠି ତୁମେ ଜଙ୍ଗଲ ପାହାଡ଼ ଘେରା ମୟୁରଭଞ୍ଜର, କରଞ୍ଜିଆ, ଉଦଳା, ବାଙ୍ଗିରପୋଷୀର ଆଦିବାସୀଙ୍କ ଭିତରେ ବାଲ୍ୟକାଳ କଟାଇ ଫେରିଥିଲ ନିଜ ଗାଁକୁ । ସମୁଦ୍ର କୂଳିଆ ଗାଁ । ସନ୍ଧ୍ୟାହେଲେ ସମୁଦ୍ର ଗର୍ଜନ ଶୁଭୁଥିଲା ଗାଁ ଦାଣ୍ଡରେ । ରାଜରାସ୍ତାଠାରୁ ପ୍ରାୟ ତିନି ମାଇଲ ଦୂର । ବାଟରେ ନାଳ । ରାସ୍ତାର ଦୁଇପାଖରେ ବିଲ । ଏ ବିଲରୁ ସେ ବିଲକୁ ପାଣି ମାଡ଼ିବା ପଇଁ ନାଳଖୋଲି ରଖିଥାନ୍ତି - କୃଷକମାନେ । ନାଳରେ ବଜା ବସିଥାଏ । ସେଥିରେ ମାଛ ପଡ଼ିବା ଦେଖି, ଘଣ୍ଟା ଘଣ୍ଟା କାଟିଦେଉଥିଲ, ଆଉ ତୁମକୁ ଏଇ ମାଛଧରା ସାଙ୍ଗ ମିଳିଗଲେ, ତୁମ ଘରେ । ନୂଆ ହୋଇ ଗ୍ରାମକୁ ଆସିଥିଲ, ହେଲେ ନିଜର କରିନେଲ ତୁମର ଜଣେ ବଡ଼ ଭାଇଙ୍କୁ । ଯାହାଙ୍କ ବୟସ ବୋଧେ ୪୦ ରୁ ୫୦ ବର୍ଷଥିଲା । ତାଙ୍କୁ ଅଦୁ ଭାଇ ବୋଲି ଚିହ୍ନିଲ । ମାଛ ଧରିବା ପାଇଁ କଳ ବନସୀ ନେଇ ଗଲାବେଳେ ତୁମେ ଚାରା ଧରି ଚାଲୁଥିଲ ତାଙ୍କ ସାଙ୍ଗରେ । ମାଛ ଧରିବା ମଧ୍ୟ ତୁମର ଏକ ସଉକ ହୋଇଗଲା । କିଛି ବର୍ଷ ତଳେ ହୁଏତ ୬୦ କିମ୍ବା ୭୦ ଦଶକରେ ବଢ଼ି ଆସି; ଦଳେଇ ଘାଇ ବନ୍ଧ ଭାଙ୍ଗି ବହୁ କ୍ଷତି କରିଥିଲା

ଏବଂ ସୃଷ୍ଟି କରିଥିଲା ଏକ ବିସ୍ତୃତ ଜଳାଶୟ ଜିଉନ୍ତୀ ଓ କାହାଳ ମଝିରେ। ଗାଁ ମୁଣ୍ଡି ହତାରୁ, ବ୍ରାହ୍ମଣ ଶାସନ ବାମଦେଇପୁର ଦେଇ ଯିବାକୁ ପଡ଼େ ସେଇ ବିସ୍ତୃତ ଜଳାଶୟ ଡଅଁରକୁ। ଯେଉଁଠି ମୀନଠାରୁ ଆରମ୍ଭ କରି ୫ ସେର ଓଜନର ମାଛ ଧରୁଥିଲ... ଅଦୁ ଭାଇ ଓ ତୁମେ।

ମନେ ଅଛିନା ତୁମ ବାପାଙ୍କ ବଦଳି, ବାରିପଦାରୁ ଗଞ୍ଜାମ ଛତ୍ରପୁରକୁ ହୋଇଥିଲା। ଏବଂ ସେଠାରେ, ସ୍କୁଲରେ ନାମ ଲେଖାଇଲା ବେଳକୁ ତୁମର ବୟସ ଢେର ଅଧିକ ହୋଇଯାଇଥିଲା, ତେଣୁ ସେଇ ଜର୍ଜ ଉଚ୍ଚ ପ୍ରାଥମିକ ସ୍କୁଲର ପ୍ରଧାନ ଶିକ୍ଷକ ତୁମର ବୟସ କମାଇ, ତୁମକୁ ୪ର୍ଥ ଶ୍ରେଣୀରେ ନାମ ଲେଖାଇଥିଲେ, ଏବଂ ତୁମେ ସେହି ସ୍କୁଲରୁ ୫ମ ଶ୍ରେଣୀରୁ ବୃତ୍ତିପାଇ, ଛତ୍ରପୁରର ଆନ୍‌ସ୍ଲୋ ଇନ୍‌ସ୍‌ଟିଚ୍ୟୁସନ୍ ସ୍କୁଲରେ ୬ଷ୍ଠ ଶ୍ରେଣୀରେ ନାମ ଲେଖାଇଥିଲ, କିନ୍ତୁ ସେଇବର୍ଷ ହିଁ ତୁମ ବାପାଙ୍କର ବଦଳି ପରଳାଖେମଣ୍ଡି ହୋଇଗଲା, ଏବଂ ତୁମେ ଜଣେ ବନ୍ଧୁଙ୍କ ଘରେ ରହି ଷଷ୍ଠ ଶ୍ରେଣୀ ପରୀକ୍ଷା ଦେଇ, ପାରଳାଖେମଣ୍ଡି ଚାଲିଗଲ ଓ ସେଠି ମହାରାଜା ବାଳକ ବିଦ୍ୟାଳୟରେ ନାମ ଲେଖି ସ୍କୁଲର ସହପାଠୀ ଓ ଶିକ୍ଷକ ମାନଙ୍କର ଅତିପ୍ରିୟ ହୋଇଉଠିଲ। ଏଥିପାଇଁ ବୋଧେ, ତୁମର ମନଲୋଭା ସ୍ୱାସ୍ଥ୍ୟ ଓ ମୁଖମଣ୍ଡଳ ହିଁ ଦାୟୀ କହିଲେ ଭୁଲ ହେବନାହିଁ।

ହଁ ଅଷ୍ଟମ ଶ୍ରେଣୀରେ ପଢ଼ିବା ସମୟରେ, ସ୍କୁଲର ଏକ ନାଟକରେ ତୁମେ ତାମିନା (ନାୟିକା) ଭୂମିକାରେ ଅଭିନୟ କରି, ଶ୍ରେଷ୍ଠ କଳାକାର ଭାବେ ୨୭ଟି ରୂପା ପଦକ ପାଇ ସ୍କୁଲରେ ଚହଳ ପକାଇଥିଲ, କିନ୍ତୁ ପାଠ ଖସିଗଲା ପ୍ରଥମ ସ୍ଥାନରୁ ୩ୟ ସ୍ଥାନକୁ। ନାଟକର ନାମଥିଲା "ସ୍ୱରାବ ଓ ରୁସ୍ତମ।"

କ୍ଲାସରେ, ତୃତୀୟ ସ୍ଥାନକୁ ଖସିଯିବାରୁ, ଗୁରୁ ପ୍ରତୀମ ସ୍ୱର୍ଗତ ଆଦିକନ୍ଦ ରଥ, ବେଶ କିଛି ସମୟ ଉପଦେଶ ଛଳରେ, ଆଉ କୌଣସି

ସ୍କୁଲର କାର୍ଯ୍ୟକ୍ରମରେ ଭାଗ ନନେଇ, ପଢ଼ାରେ ଧ୍ୟାନ ଦେବାକୁ ଉପଦେଶ ଦେଇଥିଲେ, ଏବଂ ସେ ପ୍ରକାରାନ୍ତରେ ପ୍ରଫେସର ବେଣୀମାଧବ ପାଢ଼ୀଙ୍କ ଇଚ୍ଛାକୁ ନା'ରେ ବଦଳାଇବା ହିଁ ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା। କାରଣ ପାଢ଼ୀ ସାର୍ ନୂଆ ବୋଉ ସିନେମାରେ, ଗୋଟିଏ ଛୋଟ ଭୂମିକାରେ ତୁମକୁ ଅଭିନୟ କରିବାକୁ ଆଗ୍ରହ ପ୍ରକାଶ କରିଥିଲେ ଓ ସେହିବର୍ଷ ଗ୍ରୀଷ୍ମଋତୁରେ ତାଙ୍କ ଗ୍ରାମର ଏକ ଯାତ୍ରାରେ ଠାକୁରାଣୀ ବେଶରେ, ଗାଁ ପରିକ୍ରମା କରାଇ, ଗ୍ରାମ ଯାତ୍ରାରେ ଗ୍ରାମର ପୁରୁଷ, ମହିଳା, ତଥା ଆବାଳ ବୃଦ୍ଧବନିତାଙ୍କୁ ଆଶୀର୍ବାଦ ଦେବା କର୍ମ, ବୋଧେ ଆଜି ତାର ନକାରାତ୍ମକ ଫଳ ଭୋଗିବାକୁ ପଡୁଛି ତୁମକୁ।

ଜଣେ ଶିକ୍ଷକ, ଶିକ୍ଷାର ଅବନତି ପାଇଁ, ନାଟକ ହିଁ ଦାୟୀ କହୁଥିଲାବେଳେ ଗଣିତ ଶିକ୍ଷକ ସ୍ୱର୍ଗତ ଗଣେଶ୍ୱର ମିଶ୍ର, (ସମର ଶିକ୍ଷାର୍ଥୀ ବାହିନୀର ପ୍ରଥମ ଅଫିସର। ଏନ୍‌ସିସିରେ ମିଶିବା ପାଇଁ ଫର୍ମଟି ଦସ୍ତଖତ କରାଇ ନେଇ - ପୋଷାକ, ଜୋତା ଇତ୍ୟାଦି ଯୋଗାଇ ଦେଲେ। ସେ ସମୟରେ ପ୍ୟାଣ୍ଟ୍-ସାର୍ଟର ଅଭାବ ମେଣ୍ଟାଇଥିଲା ଏଇ ଦୁଇହଳ ପୋଷାକ। ସ୍କୁଲ ପାଇଁ ମୋଚି ତିଆରି ଚଟି ଦୁଇପଟ ମଧ୍ୟ କିଛି ସମୟ ବିଶ୍ରାମ ନେଲେ ଏଇ ନାଲି ଜୋତା ପାଇଁ। ବାପା ଖାକି ପୋଷାକ ସହିତ ଖାକି ହାପପେଣ୍ଟ ଓ ଧଳା ସାର୍ଟ ପିନ୍ଧିବାକୁ ଭାରି ପସନ୍ଦ କରୁଥିଲେ, ଏବଂ ତୁମକୁ ମଧ୍ୟ ସେଇ ଖାକି ପୋଷାକ ଓ ଅନ୍ୟ କୌଣସି ସାର୍ଟ (କାମିଜ) ସହ ନାଲି ଜୋତା, ମୋଜା ପିନ୍ଧି, ପେରେଡ୍ କରିବା ଭାରି ଭଲ ଲାଗୁଥିଲା। ସେଇ ଏନ୍.ସି.ସି.ରେ ବର୍ଷକ ଭିତରେ ତୁମେ ପ୍ରୋମସନ ପାଇ ସର୍ଜେଣ୍ଟ ପାହ୍ୟାକୁ ଚାଲିଗଲ, ଏବଂ ତାକୁ ତୁମେ କଲେଜରେ ମଧ୍ୟ ଆପଣେଇ ନେଲ। ଯଦିଚ କିଛିଟା ପରିସ୍ଥିତି ତୁମକୁ ବାଧ୍ୟ କଲା।

ତୁମେ ସ୍କୁଲର ଏନ୍.ସି.ସି.ର ସର୍ଜେଣ୍ଟ ବା ହାବିଲଦାର; ତାହାହିଁ ସ୍କୁଲର ଶ୍ରେଷ୍ଠ ଉପାଧି : ହେଲେ, ସ୍କୁଲର ବାର୍ଷିକ ଉତ୍ସବ ଖେଳ-କୁଦରେ

- ୧୦୦, ୨୦୦, ୫୦୦, ୧୫୦୦ ମିଟର; ହପଷ୍ଟେପ୍ ଜମ୍ପ, ଲଙ୍ଗ୍‌ଜମ୍ପ, ଭଲିବଲ, ଫୁଟବଲ ସବୁଥିରେ ଭଲ ଖେଳୁଥିଲ ଏବଂ ସବୁ ପୁରସ୍କାର ସାଉଁଟିବାରେ ଥିଲ ମାହିର । ତେଣୁ ଏକାଦଶ ଶ୍ରେଣୀରେ ପରୀକ୍ଷା ଦେବାକୁ ତୁମେ ସକ୍ଷମ ହୋଇପାରିନଥିଲ । ସ୍କୁଲ ପରୀକ୍ଷାରେ ତୁମେ ତିନୋଟି ବିଷୟରେ ଫେଲମାର୍କ ରଖିଥିବାରୁ, ତୁମକୁ ପ୍ରଧାନ ଶିକ୍ଷକ ବୋର୍ଡ୍ ପରୀକ୍ଷା ଦେବା ପାଇଁ ଉତ୍ତୀର୍ଣ୍ଣ ହେବାକୁ ବଞ୍ଚିତ କରିଥିଲେ, ତେଣୁ ତୁମର ପ୍ରିୟ ଶିକ୍ଷକ ଗଣ, ପ୍ରଧାନ ଶିକ୍ଷକଙ୍କୁ ତୁମକୁ ଉତ୍ତୀର୍ଣ୍ଣ କରିବାକୁ ବାଧ କରିଥିଲେ ଓ ସିଏ ନିଶ୍ଚୟ ବୋର୍ଡ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବ ବୋଲି ଯୋର୍ ଦେଇ କହିଥିଲେ । ଅବଶେଷରେ, ତୁମର ପ୍ରଥମ ଗୁରୁ ସ୍ୱର୍ଗତ ଆଦିକନ୍ଦ ରଥ, ପ୍ରଧାନ ଶିକ୍ଷକଙ୍କୁ ଲିଖିତ ପ୍ରତିଶ୍ରୁତି ଦେଇ, ତୁମକୁ ପାଶ୍ କରାଇଥିଲେ ।

ସେ କଥା ବି ତୁମର ମନେଥିବ, ତୁମେ ସେହିଦିନ ଠାରୁ ସକାଳୁ ୫ଟାରୁ ଉଠି, ଦୀର୍ଘ ଅଢ଼େଇ କିଲୋମିଟର ଯାଇ, ଆଦିକନ୍ଦ ରଥ ସାର୍‌ଙ୍କ ଘରେ, ତାଙ୍କ ଦୁଇ ପୁଅଙ୍କ ସହିତ ପଢୁଥିଲ, ଓ ସମୟ ସମୟରେ ଗଣେଶ୍ୱର ମିଶ୍ର ମଧ ତୁମକୁ ଗଣିତ ପାଇଁ ଦିଗ୍‌ଦର୍ଶନ ଦେଉଥିଲେ ତୁମେ ଭଲ ଛାତ୍ର ଥିଲ ଓ ଆଜ୍ଞାବହ ମଧ ।

ଛୁଟିରେ ପ୍ରାୟ ସମସ୍ତଙ୍କ ଘରକୁ ଯାଇ ପଢ଼ାପଢ଼ି କରି ମାଟ୍ରିକ ବା ଏକାଦଶ ବୋର୍ଡ ପରୀକ୍ଷା ଦେଇଥିଲେ ।

ଶେଷରେ ସମୟ ଆସିଲା । ସବୁ ଚିନ୍ତାର ଅବସାନ ଘଟିଲା ଖବର କାଗଜରେ ପ୍ରକାଶ ପାଇବା ପୂର୍ବରୁ, ଟେଲିଗ୍ରାମ ପହଞ୍ଚିଲା ତୁମେ ୨ୟ ଶ୍ରେଣୀରେ ପାଶ କରିଛ ବୋଲି । ଟେଲିଗ୍ରାମଟିକୁ ଧରି ତୁମେ ପ୍ରଥମେ ଯାଇଥିଲ ରଥ ସାରଙ୍କ ଘରକୁ ଶୁଭ ଖବର ଜଣାଇବାକୁ । ସାର୍ ଶୁଣି କେବଳ ଖୁସି ହୋଇନଥିଲେ, ସେ ଅଢ଼େଇଟଙ୍କା ଧରେଇ ଦେଇ କହିଥିଲେ, ନେ - ଏ ଅଢ଼େଇ ଟଙ୍କାରେ ମିଠା କିଣି, ପ୍ରଧାନ ଶିକ୍ଷକ (ରାମ ଚନ୍ଦ୍ର ପଣ୍ଡା)ଙ୍କ

ଘରକୁ ଯାଇ, ଏ ଖବର ଦେଇ ଆସିବୁ, ମୋ ଇଜ୍ଜତ ରଖିଦେଲୁ, ତାହା ହିଁ ଯଥେଷ୍ଟ ।

ସାରଙ୍କ ଏଇ ଦୁଇପଦ କଥା ଭୁଲି ପାରିନ ନା । ହଁ ଇଏତ ଥିଲା ସେ କାଳର ଗୁରୁ-ଶିଷ୍ୟ ପରମ୍ପରା । ସେଇଥିପାଇଁ ତ ତୁମେ ଭୁଲି ପାରିନ, ସାରଙ୍କୁ ଏବଂ ତାଙ୍କର ଦୁଇ ପୁଅଙ୍କୁ ବିଜୟ ଓ ରଘୁନାଥଙ୍କୁ ଏବଂ ସେ ପୋଷ୍ଟ ମାଷ୍ଟରଙ୍କୁ, ଯିଏ କି ଯାଜପୁର ନିବାସୀ ଓ ଏଇ ୨/୩ ମାସ ହେବ ସେ ପୋଷ୍ଟମାଷ୍ଟର ଭାବେ ପାରଳାରେ ଜଏନ୍ କରିଥିଲେ । ତୁମ ସହିତ ତାଙ୍କର ୨ୟ କନ୍ୟା ମଧ୍ୟ ୨ୟ ଶ୍ରେଣୀରେ ପାଶ କରିଥିଲା ଓ ୨ ଜଣଙ୍କ ନାଁ ସେଇ ଟେଲିଗ୍ରାମ ହିଁ ପାଶ ଖବର ଆଣିଥିଲା ସୁଦୂର କଟକ ସହରରୁ ପାରଳାଖେମଣ୍ଡି ପର୍ଯ୍ୟନ୍ତ – କିନ୍ତୁ ଦୁଇଦିନ ପରେ ସମାଜରେ ପ୍ରକାଶ ପାଇଲା ଚନ୍ଦ୍ର ଶେଖର ମହାନ୍ତି (ଶଶାଙ୍କ ନାମଟି ନଥିଲା, ତେଣୁ ପ୍ରଧାନ ଶିକ୍ଷକ ମାର୍କଲିଷ୍ଟ ସ୍କୁଲରେ ନ ପହଞ୍ଚିବା ପର୍ଯ୍ୟନ୍ତ, ଟେଲିଗ୍ରାମକୁ ବିଶ୍ୱାସକୁ ନେଇନଥିଲେ ।

ଶେଷରେ ମାର୍କସିଟ ପହଁଥିଲା, ଉଚ୍ଚଶିକ୍ଷା ପାଇଁ ମାର୍କସିଟ ଓ ସ୍କୁଲ ଲିଭିଙ୍ଗ ସାର୍ଟିଫିକେଟ ମିଳିଲା – ପ୍ରଧାନ ଶିକ୍ଷକଙ୍କ ମୁରୁକି – ମୁରକି ହସ ଆଜିବି ତୁମର ମନେ ଅଛିନା – ହଁ ତାଙ୍କର ମୁଖମଣ୍ଡଳରୁ ଗୋଟିଏ କଥା ସ୍ପଷ୍ଟ ମନେ ଅଛି "ଯା' ଭଲ କରି ପଢ଼ାପଢ଼ି କର" ।

ସ୍କୁଲ ସମୟ ବିତିଗଲା, କଲେଜରେ ନାମ ଲେଖା ହେବ, ଏଇତ ଉଚ୍ଚଶିକ୍ଷା ଆଉ ଉଚ୍ଚ ଅଭିଳାଷ ପୁରଣ କରିବାର ଏକ ମାତ୍ର ପନ୍ଥା, କିନ୍ତୁ କାହିଁ ଏ କ'ଣ ସଫଳ ହେବ । ବାପାଙ୍କର ଅବସର ନେବାର ସମୟ । ଭାଇ ଚାକିରୀରେ ବାହିଲ ହୋଇ ଯାଇଥିଲେ ମଧ୍ୟ – ବାପାଙ୍କ ମୁଣ୍ଡରେ ୫ ପ୍ରାଣୀ କୁଟୁମ୍ବର ବୋଝ । ତୁମ ତଳେ ଆଉ ଦୁଇ ଭାଇଭଉଣୀ । ଭଉଣୀ ୫ମ ଶ୍ରେଣୀ ପରେ ଆଉ ସ୍କୁଲ ମାଡିଲା ନାହିଁ, ସାନ ଭାଇର ବୋଧେ ଷଷ୍ଠ ନା ସପ୍ତମ ଶ୍ରେଣୀ, ତଥାପି ବାପା ତୁମର ଧାର ଉଧାର କରି, ତାଙ୍କ ଉପରିସ୍ଥ ଅଫିସର ଗୋବିନ୍ଦ ଚନ୍ଦ୍ର ପାଢ଼ୀବାବୁଙ୍କ ସାନ ଭାଇ ଓ ପ୍ରଫେସର ଗୋପାଳ

କୃଷ୍ଣ ପାଢ଼ୀଙ୍କ ସାହାଯ୍ୟ ନେଇ; ବିଜ୍ଞାନ ପଢ଼ିବା ପାଇଁ କଲେଜରେ ନାମ ଲେଖାଇ ଦେଲେ। କଲେଜରେ ପ୍ରଥମ ବର୍ଷ, ପ୍ରଥମ ଅନୁଭୂତି କଲେଜ ଛାତ୍ର। ସମସ୍ତେ ଫୁଲ ପ୍ୟାଣ୍ଟ୍ ଓ ଫୁଲସାର୍ଟ ପିନ୍ଧି କଲେଜକୁ ଯିବାବେଳେ ତୁମର ସେହି ହାପ ପ୍ୟାଣ୍ଟ୍ ସାର୍ଟ ଓ ଚପଲରେ କିଛିଦିନ ଚଳାଇ ନେଲ। ହେଲେ ଦିନେ କଲେଜ ପ୍ରିନ୍‌ସ୍‌ପାଲଙ୍କ ନଜରରେ ଆସିଗଲା; ଏବଂ ତା ପରଦିନ କଲେଜ ଯିବା ଆଗରୁ ଖବର ଆସିଲା, ପାଢ଼ୀ ସାର ଡାକିଛନ୍ତି ଶୀଘ୍ର ଆସ : ସକାଳୁ ସକାଳୁ ସାରଙ୍କ ସଙ୍ଗେ ଦେଖାକଲ, ସାରଙ୍କ ନିର୍ଦ୍ଦେଶ ଶୀଘ୍ର କଲେଜ ଯାଇ, କଲେଜର ଏନ୍.ସି.ସି ସୁବେଦାର କୃଷ୍ଣ ବାହାଦୁର ଥାପାଙ୍କ ସଙ୍ଗେ ଦେଖାକର। ସାଙ୍ଗେ ସାଙ୍ଗ ଚାଲିଲ କଲେଜ। କଲେଜ ଏନ୍.ସି.ସି. ଷ୍ଟୋରରେ ସୁବେଦାର ଥାପା କାର୍ଯ୍ୟ ବ୍ୟସ୍ତ, ତଥାପି ସଙ୍ଗେ ସଙ୍ଗେ ଉଠି ତୁମକୁ ସାର୍ଟ-ପେଣ୍ଟ ଥିବା ରୁମକୁ ନେଇ ଦେଖାଇ ଦେଲେ, ଏଠାରୁ ଖୋଜି ନିଜ ସାଇଜ ମୁତାବକ ୨-୩ହଳ ପ୍ୟାଣ୍ଟ୍ ସାର୍ଟ ବାଛ। ସେଥିରୁ ସାର୍ଟ-ପ୍ୟାଣ୍ଟ୍ ବାଛି ଆଣି-ସେହି ଦିନଠାରୁ ଫୁଲପ୍ୟାଣ୍ଟ୍ ମିଳିଗଲା। କେହି ଜାଣିଲେ ନାହିଁ କଣ ହେଲା, ତାପରେ ଏନ୍.ସି.ସି.ର କ୍ୟାଡେଟ୍ ହୋଇଗଲ ଓ ଜୁନିଅର ଗ୍ରୁପରେ ପାଇଗଲ ଲାନ୍ସ ନାଏକ ପୋଷ୍ଟ; ଖୁସି ମନରେ, ଚାଲିଲା ଏନ୍.ସି.ସି. ଟ୍ରେନିଂ।

କଲେଜର ପ୍ରଥମ ବର୍ଷ ପି.ୟୁ.ସି. ବା ପ୍ରି.ୟୁନିଭରସିଟିର ବିଜ୍ଞାନ ପାଠ। ବହି ନଥାଇ - ନୋଟ ସିଟ - ନୋଟ ସିଟରେ ପରୀକ୍ଷା ଦେଇ ପାଶ ତ କରିଗଲ, ହେଲେ ଭଲ ନଂ ରହିଲା ନାହିଁ, ତେଣୁ ମନରେ ଦୁଃଖ ହେଲା ସତ, କିନ୍ତୁ ୨ୟ ବର୍ଷ ପି.ପି.ସି. ବା ପ୍ରି ପ୍ରଫେସନାଲ୍ କୋର୍ସରେ ସେଇ ବିଜ୍ଞାନ ଶ୍ରେଣୀରେ ପାଠ ପଢ଼ା ନିଶ୍ଚୟ କଷ୍ଟକର ଥିଲା। ତୁମ ସାଙ୍ଗରେ ପଢୁଥିବା ସେଇ ଝିଅଟି ତୁମ ମନକଥା ଜାଣି ମଝିରେ ମଝିରେ ଫିଜିକ୍ସ, କେମେଷ୍ଟ୍ରି, ଜୁଲୋଜୀ, ଓ ବାୟୋଲୋଜୀ ବହି ଯୋଗାଇଥିଲା। ତୁମେ ପ୍ରାଣୀ ବିଜ୍ଞାନ ଉପରେ ବେଶ ସମୟ ଦେଉଥିଲ। ଡିସେକ୍‌ସନ ବକ୍ସଟି ମଧ୍ୟ ଯେଉଁ କଷ୍ଟରେ କିଣିଥିଲ ତା ମଧ୍ୟ ତୁମେ ଭୁଲି ନଥିବ ବୋଧେ।

ହଁ - କିନ୍ତୁ, ତୁମର ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଦିନକର, କାର୍ଯ୍ୟସୂଚୀ ଅତି ବିଚିତ୍ର ଥିଲା। ସକାଳୁ ଖେଳ ପଡ଼ିଆ, ସଂନ୍ଧ୍ୟାରେ ଏନ୍.ସି.ସି. ଟ୍ରେନିଂ, ନଚେତ୍ ପୁଣି ସେହିଖେଳ। ଘରକୁ ଆସିଲାବେଳକୁ ସନ୍ଧ୍ୟା ପାଞ୍ଚ-କିମ୍ବା-ଛ- ଏ ପରିକି ଶୀତ ଦିନରେ ବି ତୁମର ସମୟ ନଥାଏ ଅନ୍ୟ କିଛି କାମ କରିବାକୁ।

ପାରଳାଖେମଣ୍ଡିର ଖଞ୍ଜା ସାହି ଘର, ସେଥିରେ ଥିବା କୂଅରୁ ପାଣି କାଢ଼ିବା ତୁମର କାର୍ଯ୍ୟଥିଲା, ତା ପରେ ଘରେ ଅନ୍ୟ କାର୍ଯ୍ୟରେ ତୁମେ ମୁଣ୍ଡ ପୁରାଅ ନାହିଁ। କଲେଜ ବିନା ନଲେଜ୍ ନାହିଁ, ତେଣୁ ତୁମେ ଭଲ ନଲେଜ ପାଇଲ ତୁମ ବିଜ୍ଞାନ ବ୍ୟାଚରେ; ୮ ପୁଅରେ ୯ ଝିଅ ତାଙ୍କ ମେଳରେ ତୁମକୁ ବହିଖାତା ଯୋଗାଉଥିବା ଗୋଟିଏ ଝିଅ। ସବୁ ଯୋଗାଉଥିଲା ହେଲେ ତୁମେ କଲେଜର ୨ୟ ବର୍ଷ ପି.ପି.ସିରେ ଫେଲ ହେଲ କାହିଁକି। ଫେଲ ହୋଇ ଚାଲିଗଲ ଇଷ୍ଟ ପଞ୍ଜାବର କାଂଗ୍ରା ଜିଲାର ଧର୍ମଶାଳା ମିଲିଟାରୀ ବେଶକୁ; ଏଡ୍‌ଭାନସ ଟ୍ରେନିଂ ପାଇଁ।

ଟ୍ରେନିଂରୁ ଫେରି ଦେଖିଲ ସବୁକିଛି ବଦଳି ଯାଇଛି। ତୁମର ଚୁମ୍ବନ ପ୍ରିୟାସୀ ପ୍ରିୟା ଚାଲିଯାଇଛି କେଉଁ ଅଜଣା ଜାଗା, କଟକର ଏକ ସୁଦୂର ସହରକୁ। ଏଣେ ଅକୃତ କାର୍ଯ୍ୟ ତେଣେ ବିରହ, ଏହାକୁ ମନରେ ଚାପି, ଗୁମ୍ଫା ବିଷୋଇଙ୍କ ସଙ୍ଗରେ ଚାଲିଲ ଏକ ନୂତନ ସୃଷ୍ଟି ପାଇଁ। ଗଢ଼ିଲ ନୂଆ ଏକ ସ୍କୁଲ, ଅଷ୍ଟମରୁ ଏକାଦଶ। ଗରିବ ଆଦିବାସୀ ଓ ଖ୍ରୀଷ୍ଟିୟାନ ପିଲାଙ୍କୁ ନେଇ ସ୍କୁଲର ବେଲ୍ ବାଡ଼େଇବାଠାରୁ ଶିକ୍ଷକତା କଲ, ହେଲେ ଖୁବ୍ କମ ସମୟ ପାଇଁ। ପାରଳାରୁ ଧାରରେ ବହି-ଖାତା ସବୁ ନେଇ ପିଲାଙ୍କୁ ପଢ଼ାଉ ଥିଲ, ହେଲେ ବାପା ତୁମର ଏହାକୁ ସହଜରେ ନେଲେ ନାହିଁ। କାର୍ଯ୍ୟରୁ ଅବସର ନେଲାପରେ ୫ ପ୍ରାଣୀ କୁଟୁମ୍ବ ଚଳାଇବାରେ ସେ ଅକ୍ଷମତା ପ୍ରକାଶ କଲେ। ତେଣୁ ତୁମେ ଚାକିରି ଖଣ୍ଡେ ପାଇଁ, ଯୋଗାଣ ବିଭାଗରେ ନା' ଲେଖାଇଲ ଓ ଅଳ୍ପଦିନ ଭିତରେ ଫରେଷ୍ଟ ଡିପାର୍ଟମେଣ୍ଟରେ ପରୀକ୍ଷା ଦେଲ ହେଲେ ବୟସ କମ ଥିବାରୁ ତୁମକୁ

ସେହି ବିଭାଗରେ ଚାକିରି ମିଳିନଥିଲା, କିନ୍ତୁ ତାପରେ ପରେ ତୁମର ପ୍ରିୟ ସମର ଶିକ୍ଷାର୍ଥୀ ବାହିନୀରେ ଇଣ୍ଟରଭ୍ୟୁ ଦେବାକୁ ଆଦେଶ ଆସିଲା ଓ ପରୀକ୍ଷା ଦେଇ ପାଶ୍ କଲ। ତା'ପରେ ଏକାଦଶ ଓଡ଼ିଶା ବଟାଲିଅନ୍ ଏନ୍.ସି.ସି.ରେ ଯୋଗଦେଲ ଜାନୁଆରୀ ୯' ୧୯୬୫ରେ-ତାପରେ ତୁମର ଜୀବନର ଦାୟିତ୍ୱ ବଢ଼ିଗଲା - ଚାଲିଲ ବଙ୍କା-ଟଙ୍କା ବାଟରେ - ଆରମ୍ଭ ହେଲା ତୁମ ଜୀବନର ଛବି....।

ପ୍ରଭାସ ଚନ୍ଦ୍ର ରାୟ





ଓ୍ୱାରେଣ୍ଟ ଅଫିସରଙ୍କ ସହିତ ଏକ ଅନ୍ତରଙ୍ଗ ଆଳାପ।



ଶଶାଙ୍କ ଶେଖର ମହାନ୍ତି ମୟୂରଭଞ୍ଜ ଜିଲ୍ଲା କରଞ୍ଜିଆରେ ପିତା- ରମାଚରଣ ଓ ମାତା ବିଦ୍ୟୁତଲତାଙ୍କ ୪ର୍ଥ ସନ୍ତାନଭାବେ ଜନ୍ମଗ୍ରହଣ କରିଥିଲେ। ବଡ଼ଭାଇ ଡିଏସ୍‌ପିରୁ ଅବସର ଗ୍ରହଣ କରି ବର୍ତ୍ତମାନ ମୁଣ୍ଡହତା, ଅସ୍ତରଙ୍ଗ ପୁରୀରେ ଅବସ୍ଥାନ କରୁଛନ୍ତି। ଅନ୍ୟ ଭାଇଭଉଣୀମାନେ ଆରପାରିରେ। ବାପା ପୋଲିସ୍ ଡିପାର୍ଟମେଣ୍ଟରେ ଚାକରି କରି ସବ୍‌ଇନିସ୍‌ପେକ୍ଟର ଭାବେ ଅବସର ଗ୍ରହଣ କରିଥିଲେ।

ଶଶାଙ୍କ ବାବୁଙ୍କ ପାଠପଢ଼ା ଛତ୍ରପୁରରୁ ଆରମ୍ଭ ହୋଇ ପାରଳାଖେମଣ୍ଡିରେ ଶେଷ ହୋଇଥିଲା। ତେବେ ବାପାଙ୍କର ଅବସର ପରେ ପାଠପଢ଼ା ମଧ୍ୟ ଠିକ୍ ଭାବେ ହୋଇପାରିନଥିଲା ତଥାପି ସ୍କୁଲ ଶିକ୍ଷକ ଓ କଲେଜର ଜଣେ, ଦୁଇଜଣ ପ୍ରଫେସରଙ୍କର ସାହାଯ୍ୟରେ ସେ ପିପିସି ପର୍ଯ୍ୟନ୍ତ ଯାଇ ପାରିଥିଲେ। ତେବେ ଚାକରି ପରେ ସିଏ ବ୍ରହ୍ମପୁରରେ ଇଭିନିଂ କଲେଜରେ ବି.ଏ. ପର୍ଯ୍ୟନ୍ତ ଓ ପରେ ପୁରୀ ଏସ୍‌କେସିଜି କଲେଜରେ ବିଏ ପରୀକ୍ଷା ଦେଇ ପୁଣି ସମ୍ବଲପୁରକୁ ବଦଳି ହୋଇଯାଇଥିଲେ।

ଏ ଭିତରେ ମିଲଟାରୀ ଅଫିସରଙ୍କ ପାଖରେ ଚାକିରି କରି ହିନ୍ଦି ଓ ଇଂରାଜୀ ଛଡ଼ା ଓଡ଼ିଆ ସାହିତ୍ୟର ଧାର ଧରିନଥିଲେ ତଥାପି ସହଧର୍ମିଣୀଙ୍କ ପ୍ରରୋଚନାରେ ଭୁବନେଶ୍ୱରରୁ ଗୋଟିଏ ମାସିକ ପତ୍ରିକା ପ୍ରକାଶ କଲେ "ନିୟନ୍ତା" ନାମରେ। ତାପରେ କିଛିଦିନ "ତ୍ୟାଗ ଓ ସେବା" ନାମରେ ଏକ ଦଳୀୟ ପତ୍ରିକା ଓ ତାପରେ ନିଜସ୍ୱ "କଳିଙ୍ଗ ପ୍ରହରୀ" ମାସିକ ପତ୍ରିକା ପ୍ରକାଶ କରି ଚାଲିଛନ୍ତି। ସାହିତ୍ୟ ପାଇଁ ତାଙ୍କର ସାଥିମାନେ, ଯେଉଁମାନେ "କେଦାରନାଥ ଗବେଷଣା ପ୍ରତିଷ୍ଠାନର" ସଦସ୍ୟ, ସେମାନଙ୍କ ପ୍ରୋତ୍ସାହନ ଓ ଇଚ୍ଛାକୁ ସମ୍ମାନ ଜଣାଇ ଖଣ୍ଡେ ବହି ପ୍ରକାଶ କରିବାକୁ ମନସ୍ଥ କରି ଆରମ୍ଭ କଲେ ନିଜର ଚାକିରି କାଳର ଅଭୁଲା ସ୍ମୃତି, ଯାହାକି "ଜୀବନର ଛବି" ରୂପରେ ଆଜି ମୁକ୍ତି ଲାଭ କରୁଛି। ସଂଘର୍ଷମୟ ଜୀବନର ପ୍ରଥମ ଇତିବୃତ୍ତ।

ଆଶା ତାଙ୍କର କଲମ ଚାଲୁ ରହୁ ଏବଂ ତାଙ୍କର କିଛି କବିତା ଓ ଗପ ଯାହା କିଛି ପ୍ରକାଶ ପାଇଛି ଓ କିଛି ପ୍ରକାଶ ଅପେକ୍ଷାରେ, ସେଗୁଡ଼ିକ ମଧ୍ୟ ପୁସ୍ତକ ଆକାରରେ ପ୍ରକାଶିତ ହେଉ ଏବଂ ଓଡ଼ିଶାର ଭାଷା ସାହିତ୍ୟକୁ ଗୁଣ୍ଡୁଚି ମୂଷା ଭଳି କିଛିଟା ସାହାଯ୍ୟ କରୁ।

ପ୍ରକାଶିକା